# ଅପୂର୍ବ-ପୂର୍ବ

ଭୂପେନ ମହାପାତ୍ର



ଓଡ଼ିଶା ବୁକ୍ ଷ୍ଟୋର

# ଅପୂର୍ବ-ପୂର୍ବ

ଲେଖକ :

**ଶ୍ରୀ ଉପେନ୍ଦ୍ର ମହାପାତ୍ର**

ରାଉରକେଲ୍

ପ୍ରକାଶକ :

ଶ୍ରୀ ବିଜୟ ଶଙ୍କର ପାତ୍ର

**ଓଡ଼ିଶା ବୁକ ଷ୍ଟୋର**

ବିନୋଦ ବିହାରୀ

କଟକ-୭୫୩ ୦୦୨

ପ୍ରଥମ ସଂସ୍କରଣ :

ବାହୁଡ଼ା ଦଶମୀ ୧୯୯୯

ପ୍ରଚ୍ଛଦ :

ଶ୍ରୀ ବିଜୟ ପ୍ରଧାନ

ମୁଦ୍ରଣ :

**ମା' ସନ୍ତୋଷୀ ପ୍ରେସ**

କାଜିବଜାର, କଟକ-୧

## APURBA-PURBA

By

**Sri Upendra Mohapatra**

Published by

**Sri Bijoy Shankar Patra**

**ORISSA BOOK STORE**

Binod Behari

Cuttack-753 002

First Edition : 1999

**PRICE Rs : 30/-**

ISBN-81-7400277-4

# ଉତ୍ସର୍ଗ

ମହାନ୍ ସମାଜବାଦୀ ନେତା, ବିପ୍ଳବୀ, ବରିଷ୍ଠ ଲେଖକ,
ଅରୁଣାଚଳର ପୂର୍ବତନ ରାଜ୍ୟପାଳ
ଡକ୍ଟର ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ
ହାତରେ ।

ଭୂପେନ ମହାପାତ୍ର
ରଜ ସଂକ୍ରାନ୍ତି
୧୯୯୯
ରାଉରକେଲା

# କିଛି କଥା-କିଛି ବ୍ୟଥା

ମୋର ପ୍ରଥମ ଭ୍ରମଣ କାହାଣୀ 'ଉପତ୍ୟକାର ଉପକଥା' ପ୍ରକାଶ ପାଇବା ପରେ ତାର ପାଠକୀୟ ମନ୍ତବ୍ୟ ମୋତେ ଏଇଟି ଲେଖିବାକୁ ଉତ୍ସାହିତ କଲା । ଲେଖା ତ ଅନେକ ଆଗରୁ ପ୍ରକାଶ ପାଇଥିଲା—ବିଭିନ୍ନ ପତ୍ରପତ୍ରିକାରେ । ସେ ସବୁକୁ ଏକତ୍ରିତ କଲି, ସଜାଡ଼ିଲି, ନୂଆ କିଛି ଯୋଡ଼ିଲି, କିଛି କାଟିଲି—ପାଣ୍ଡୁଲିପି ପ୍ରସ୍ତୁତ ହୋଇଗଲା । ମୋର ପ୍ରଥମ ପୁସ୍ତକରେ କେବଳ ଆସାମ କଥା ସ୍ଥାନିତ ହୋଇଥିଲାବେଳେ ଏଥିରେ ଅଛି ମେଘାଳୟ, ତ୍ରିପୁରା, ଅରୁଣାଚଳ, ନାଗାଲେଣ୍ଡ, ଭୁଟାନର କିଛି ଅଂଶ, ଦାର୍ଜିଲିଂ ଏବଂ ନେପାଳୀମାନଙ୍କ କଥା । ତଥାପି ସମଗ୍ର ଉତ୍ତର ପୂର୍ବାଞ୍ଚଳ ସ୍ଥାନ ପାଇପାରିଲା ନାହିଁ । କିନ୍ତୁ ଏବେ ସବୁଚ ଏତେକଥା ଲେଖିସାରିଲା ପରେ ମଧ୍ୟ ଯେମିତି ଆହୁରି ଅନେକ କଥା ବାକି ରହିଗଲା । ସେସବୁକୁ ଧରି ରଖିବାକୁ, ଲୋକ ଲୋଚନକୁ ଆଣିବାକୁ ମୋତେ ଆହୁରି ଅନେକ ପରିଶ୍ରମ କରିବାକୁ ପଡ଼ିଥାଆନ୍ତା । ସେ ଦୁଃଖ ରହିଗଲା ।

ସାହିତ୍ୟରେ ଭ୍ରମଣ କାହାଣୀର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ସେ ସ୍ଥାନ ଉପରେ କି ତଳେ ସେ କଥା ମୁଁ ଜାଣେନା । ତେବେ ତାକୁ ଗଳ୍ପ, ଉପନ୍ୟାସ କିମ୍ବା କବିତାର ମାନ୍ୟତା ମିଳେନା ଏ କଥା ସମସ୍ତେ କହନ୍ତି । ତେଣୁ ଭ୍ରମଣ କାହାଣୀ ବିଚରା ଏ ସମସ୍ତଙ୍କ ପଛରେ ପଡ଼ି ଉଠି ଦଉଡ଼ୁଥାଏ—ଯେମିତି ପଛୁଆ ଜାତିଟାଏ । କିନ୍ତୁ ମୋର 'ଉପତ୍ୟକାର ଉପତ୍ୟକା' ପଢ଼ିଲା ପରେ ଅନେକେ ଭ୍ରମରେ ପଡ଼ନ୍ତି—ଏଇଟାକୁ ଉପନ୍ୟାସ, ଗଳ୍ପ, କି ସବୁର ମିଶାମିଶି ଗୋଟାଏ, କେଉଁ ପର୍ଯ୍ୟାୟଭୁକ୍ତ ତାକୁ କରିହେବ ? ପ୍ରଫେସର ବୈଷ୍ଣବ ଚରଣ ସାମଲଙ୍କ ଉଚ୍ଛ୍ୱସିତ ପ୍ରଶଂସା ଏଇ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । 'ଅପୂର୍ବ-ପୂର୍ବ' ସେଇ ତାଙ୍କର ଲେଖା । ପାଠକମାନେ ଯଦି ଯେ ସ୍ୱାଦ ବାରି ପାରନ୍ତି ତେବେ ମୋର ପରିଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ମୁଁ ଆସାମରେ ଥିଲାବେଳେ, ମୋର ସୌଭାଗ୍ୟ, ଓଡ଼ିଶାର ତିନିଜଣ ବରପୁତ୍ର ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଶ୍ରୀ ଲୋକନାଥ ମିଶ୍ର ଏବଂ ଶ୍ରୀ ଚନ୍ଦ୍ରାମଣି ପାଣିଗ୍ରାହୀ ଉତ୍ତର-ପୂର୍ବାଞ୍ଚଳୀୟ ରାଜ୍ୟମାନଙ୍କରେ ରାଜ୍ୟପାଳ ଥିଲେ । ଜଣେ ଓଡ଼ିଆ ହିସାବରେ ମୁଁ ଏ ତିନିଜଣଙ୍କ ସହିତ ମୋର ଭ୍ରମଣ ଆରମ୍ଭ ପୂର୍ବରୁ ଯୋଗାଯୋଗ କରିଥିଲି । ଉଦ୍ଦେଶ୍ୟ ଥିଲା—ଭ୍ରମଣ ପାଇଁ ସହଜରେ ଆବଶ୍ୟକୀୟ ସରକାରୀ ଅନୁମୋଦନ ଲାଭ କରିବା । ଏ ତିନି ଜଣଙ୍କ ଭିତରୁ କେବଳ ଚନ୍ଦ୍ରାମଣି ପାଣିଗ୍ରାହୀଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ମୋର ପୂର୍ବରୁ ପରିଚୟ ନ ଥିଲା । ଶ୍ରୀ ପାଣିଗ୍ରାହୀଙ୍କ ସହିତ ପରିଚୟ ମଧ୍ୟ ଥିଲା ଅତି ସାମାନ୍ୟ—ଏକଦା ତାଙ୍କଦ୍ୱାରା ସମ୍ପାଦିତ ଗଳ୍ପ ପୁସ୍ତକ 'ପଞ୍ଚମୀ' ମାଧ୍ୟମରେ. ଯାହା ସେ ମୋଠାରୁ ଅତି ଆଗ୍ରହର ସହିତ ମାଗି ନେଇଥିଲେ ଗୋଟିଏ ଭୋଜି ସଭାରେ ।

ମୋର ସୌଭାଗ୍ୟ, ଶ୍ରୀ ଦ୍ୱିବେଦୀଙ୍କ ହସ୍ତଲିଖିତ ଓଡ଼ିଆ ଚିଠି ଆସି ପହଞ୍ଚିଲା ମାତ୍ର ଦଶଦିନ ପରେ, ଶ୍ରୀ ମିଶ୍ରଙ୍କ ବ୍ୟକ୍ତିଗତ ସଚିବଙ୍କଠାରୁ ଇଂରାଜୀରେ ଉତ୍ତର ଆସିଲା ପ୍ରାୟ ଦୁଇମାସ ପରେ ଏବଂ ଦୁଇ ତିନିଥର ଲେଖିଲା ପରେ ମଧ୍ୟ ଶ୍ରୀ ପାଣିଗ୍ରାହୀଙ୍କଠାରୁ କୌଣସି ଉତ୍ତର ପାଇ ପାରିଲି ନାହିଁ । ଶେଷରେ ମଣିପୁର ଭ୍ରମଣ ମୁଁ ମୋ କାର୍ଯ୍ୟକ୍ରମରୁ ବାଦ ଦେଲି । ଶ୍ରୀ ଦ୍ୱିବେଦୀଙ୍କ ଅମାୟିକ ଓଡ଼ିଆ ପ୍ରାଣ ତଥା ତାଙ୍କର ଅବର୍ଣ୍ଣନୀୟ ବ୍ୟକ୍ତିତ୍ୱ କଥା ଏକ ସ୍ୱତନ୍ତ୍ର ଅଧ୍ୟାୟରେ ମୁଁ ଲେଖିଛି । ତାଙ୍କଠାରେ ଏ ଲେଖକ ଚିରଦିନକୁ ଋଣୀ ହୋଇ ରହିବ ।

ଏ ପୁସ୍ତକର ପ୍ରାୟ ଅଧିକାଂଶ ଅଂଶ ଆଗରୁ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା ତଥା ସମ୍ବାଦପତ୍ରରେ ପ୍ରକାଶ ପାଇସାରିଛି । ଆଜି ତାକୁ ପୁସ୍ତକାକାରରେ ଦେଖିବାକୁ ଯାଉଥିଲାବେଳେ ମୁଁ ସେ ସବୁର ସଂପାଦକ-ମାନଙ୍କଠାରେ କୃତଜ୍ଞତା ସ୍ୱୀକାର କରୁଛି । ଏହି ଅବସରରେ ଓଡ଼ିଶା ବୁକ୍ ଷ୍ଟୋର୍‌ର ପ୍ରତିଷ୍ଠାତା ଶ୍ରୀ ଗୋବିନ୍ଦ ଚରଣ ପାତ୍ର ପୁସ୍ତକର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ମୁଁ ତାଙ୍କଠାରେ ମଧ୍ୟ କୃତଜ୍ଞତା ପ୍ରକାଶ କରୁଛି ।

॥ ଇତି ॥

**ଲେଖକ**

# ସୂଚୀ

# ଫୁଲ ଫଗୁଣର ଦେଶ—ଦାର୍ଜିଲିଂ

ଅନେକ ଦିନ ପରେ ସେଦିନ ହଠାତ୍ ଝୁକୁର ଚିଠିଟା ପାଇ ଆଶ୍ଚର୍ଯ୍ୟ ହୋଇଗଲି । ପ୍ରାୟ ତିନି ଚାରି ବର୍ଷ ହେଲା ତା'ର କୌଣସି ଖବର ମୋ ପାଖରେ ନଥିଲା । ସେ ବି ସେମିତି । ମଝିରେ ମଝିରେ ଏମିତି ଗାଏବ ହୋଇଯାଏ । ଚିଠିପତ୍ର ଦିଏନି । ବାରମ୍ବାର ଲେଖିଲେ ମଧ୍ୟ ଉତ୍ତର ମିଳେନି । ଭାବେ, ହୁଏତ ଆଉ କୋଉଠିକୁ ବଦଳି ହୋଇଗଲଣି ।

ବଡ଼ ବିଚିତ୍ର ଝିଅଟିଏ ।

ଚିଠିରେ ଲେଖିଚି । ଅନେକ ଦିନ ପରେ ଚିଠି ଲେଖୁ ଥିବାରୁ କିଛି ମନେ କରିବନି । ପାରିବାରିକ ଜଞ୍ଜାଳ ଭିତରେ କିଛି ରହି ଲେଖିବାକୁ ମୋଟେ ସମୟ ପାଉନି । ମାଆ ଏବେ ବି ସେମିତି । ତା' ସେବାରେ ଅନେକ ସମୟ କଟି ଯାଉଚି । ବଡ଼ ଝିଅ ରେଭେନ୍ସାରେ M.Sc. ପଢୁଚି । ଏଇ ବର୍ଷ ସରିବ । ଦ୍ୱିତୀୟଟି ଦିଲ୍ଲୀରେ ଇଂରାଜୀ ଅନର୍ସ ନେଇ ବି.ଏ. ପଢୁଚି ।

ଆଉ ଡାକ୍ତର ବାବୁ ? ତାଙ୍କ କଥା ନ କହିବା ଭଲ । ତାଙ୍କ ପେସେଣ୍ଟ ଭଲ ତ ସେ ଭଲ ।

ତା'ପରେ ପୁଣି ଲେଖିଚି । ତମକୁ ତ ଅନେକଥର କହିଲଣି ଥରେ ଆମ ଆଡ଼େ ବୁଲି ଆସ । ନୈନିତାଲରେ ଥିଲି, ଆସିଲନି । ହାଇଦ୍ରାବାଦରେ ଥିଲି, ଆସିଲନି । ଏବେ ତ ଏଇଠି ପାଖରେ ଅଛୁ । ଥରେ ନିଶ୍ଚୟ ଆସ । ସ୍ୱା'ଠୁ ଭଲ ଜାଗା ଆଉ ପାଇବନି । ଦେଖିଲେ ଜାଣିବ । ତମେ ତ ଲେଖକ ଲୋକ । ତମକୁ ନିଶ୍ଚୟ ଭଲ ଲାଗିବ ।

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଝୁକୁ ତେବେ ଏବେ ଆସି ଦାର୍ଜିଲିଂ ପାଖରେ ପହଞ୍ଚିଲଣି ।

ଝୁକୁ ମୋ ଆଖିରେ ବରାବର ପ୍ରୋଜାରନ୍ । ଏବେ ନୁହେଁ ପିଲାଟି କାଳରୁ । ବଙ୍ଗଳାର ଗ୍ରାଜୀ ସେ । ଖୁବ୍ ଭଲ ଷ୍ଟୁଡେଣ୍ଟ । ସବୁବେଳେ ପ୍ରଥମ ଶ୍ରେଣୀ । ତେଣୁ ସାହିତ୍ୟର ଧାର ଧାରେନା । ସେ ପ୍ରକାର ଝିଅକୁ ଦାର୍ଜିଲିଂର ସୌନ୍ଦର୍ଯ୍ୟ ପ୍ରକୃତିରେ ଆକୃଷ୍ଟ କରିଚି ନା ମୋତେ ଏମିତି ଲେଖୁ ଲେଖୁ ଲେଖି ଦେଇଚି ବୁଝି ପାରିଲିନି ।

ଚଠିଟି ସଂକ୍ଷିପ୍ତ । ଏମିତ ସେ ବରାବର ଲେଖେ ।

ସେଦିନ ମୁଁ ଲଞ୍ଚ ପାଇଁ ଘରକୁ ଆସି ଶ୍ରୀମତୀଙ୍କ ହାତକୁ ଚିଠିଟା ବଢ଼େଇ ଦେଲି ।

ଖାଉ ଖାଉ ମୁଁ କହିଲି କେବେ ଯିବାକୁ ଠିକ୍ କରୁଛ ? ଆସନ୍ତା ଶନିବାର ଗଲେ କେମିତ ହୁଅନ୍ତା ? ଏଠୁ ମାତ୍ର ପାଞ୍ଚ ଘଣ୍ଟାର ରାସ୍ତା ଶିଲିଗୁଡ଼ି । ସେଠି ନିକଟ ଜଲପାଇଗୁଡ଼ିରେ ଆମର C.I.S.F. ୟୁନିଟ ମଧ୍ୟ ଅଛି । ମୋର ପୁରୁଣା ବନ୍ଧୁ କେ.ପି. ଏସ. ତୁଳସୀ ଏବେ ସେଠି ଅଛି । ଯାହାଙ୍କରେ ସୁନୀତା ତାକୁ ଅତି ନିର୍ଦ୍ଦୟ ଭାବେ ଛାଡ଼ି ଚାଲିଗଲା ପରେ ସେ ଏବେ ଦ୍ୱିତୀୟ ଥର ପାଇଁ ଘରକରିବାକୁ ଆଉ ଗୋଟିଏ ପଞ୍ଜାବୀ ଝିଅକୁ ବାହା ହେଉଛି । ସେ ବି ମୋତେ ଥରେ ଚିଠି ଲେଖିଥିଲା । ପରିଷ୍କାର ଓଡ଼ିଆ କହୁଥିବା ପଞ୍ଜାବୀ ଝିଅକୁ ଥରେ ଆମେ ଦେଖିଯାଅ ।

ତୁଳସୀ ଆଉ ଥରେ ନୂଆ କରି ବସା ବାନ୍ଧିବାକୁ ଚେଷ୍ଟା କରୁଛି ।

ସୁନୀତା ଯୋଉଦିନ ଆମ ସମସ୍ତଙ୍କ ଆଖିରେ ଆଙ୍ଗୁଳି ଦେଇ ଘଣ୍ଟାରେ ତାର ମାତ୍ର ପନ୍ଦର ଦିନର ପୁଅ ସନ୍ତାନକୁ ଛାଡ଼ି ଆଗ୍ରା ପଳେଇଲା ସେଦିନ ସେଠା ହେଭି ଇଂଜିନିଅରିଂ କରପୋରେସନ୍ର ଷ୍ଟ୍ରେଟ ଟାଉନସିପ୍ ଭିତରେ ଚହଳ ପଡ଼ିଗଲା ।

ଅନେକେ ମୋତେ ପଚାରିଲେ । କାରଣ ସମସ୍ତେ ଜାଣିଥିଲେ ଯେ ମୁଁ ଦୀର୍ଘଦିନ ଧରି ତୁଳସୀ ଓ ସୁନୀତା ଭିତରେ ଥିବା ଅନ୍ତର୍ବିବାଦକୁ ତୁଟେଇବାକୁ ଚେଷ୍ଟା କରିଥିଲି ।

ଝିଅମାନେ ଯେ ବେଳେବେଳେ ଏତେ ନିଷ୍ଠୁର ହୋଇ ପାରନ୍ତି ସେ କଥା ମୁଁ ସେଇଦିନ ଜାଣିଲି ।

ସେ ଏକ ବଡ଼ଟ ଇତିହାସ । ତାକୁ ଲେଖି ବସିଲେ ସୁନ୍ଦର ଉପନ୍ୟାସଟିଏ ହେବ । କିନ୍ତୁ ମୁଁ କିଏ ଉପନ୍ୟାସ କିଏ ।

ମୁଁ ମୋ ସ୍ତ୍ରୀଙ୍କୁ କହିଲି ଚାଲ, ତାର ପ୍ରଥମ ସ୍ତ୍ରୀର ପୁଅକୁ ମଧ୍ୟ ଦେଖି ଆସିବା । ଆଠ ଦଶ ବର୍ଷର ହେଇଯିବଣି ।

ସେଇ ଦିନ ସନ୍ଧ୍ୟାରେ ଆମେ ସେମାନଙ୍କୁ ଫୋନ୍‌ରେ ଆମ ଯିବା କଥା ଜଣେଇଦେଲୁ ।

× × ×

ଗୋଟାଏ ଶୁଖିଲା କ୍ୟୋଷ୍ଟର ସକାଳ । ଭୋରରୁ ଉଠି ଆମେ ଦୁହେଁ ଗାଧୁଆ ପାଧୁଆ ସାରି ବାହାରି ପଡ଼ିଲୁଁ । ବଙ୍ଗାଇଗାଓଁରୁ ସିଲିଗୁଡ଼ି ଯିବାକୁ

ଦୁଇଟା ରାସ୍ତା । ଗୋଟାଏ ଜାତୀୟ ରାଜପଥର ୩୧ C । ଏ ରାସ୍ତାଟା କେତେ-କାଂଶରେ ଭୁଟାନ ସୀମା ପାଖ ଦେଇ ଯାଇ କୁଚବିହାର ସହରର ଉତ୍ତର ପଶ ଦେଇ ଯାଇ ଜଲପାଇଗୁଡ଼ି ଏବଂ ଯା'ପରେ ଶିଲିଗୁଡ଼ିରେ ପହଞ୍ଚେ । ଅନ୍ୟଟି ମୁରୁଗ୍ରା ଜିଲ୍ଲା ଭିତର ଦେଇ ବ୍ରହ୍ମପୁତ୍ର ନଦୀର ଉତ୍ତର ପାଖଦେଇ କୁଚବିହାର ସହର ଭିତର ଦେଇ ଯାଏ ଏବଂ ତା'ପରେ ଜଲପାଇଗୁଡ଼ି ଏବଂ ଶିଲିଗୁଡ଼ି ଭିତରେ ମସେ । ଏଇଟି ଜାତୀୟ ରାଜପଥ ୩୧ ନାମରେ ନାମିତ । ଜଲପାଇଗୁଡ଼ି ଏବଂ ନଭ ଜଲପାଇଗୁଡ଼ି ଗୋଟିଏ ସହର ନୁହେ । ବରଂ ନଭ ଜଲପାଇଗୁଡ଼ି ଏବଂ ଶିଲିଗୁଡ଼ିକୁ ଗୋଟିଏ ସହର ବୋଲି କୁହାଯାଇପାରେ ।

ନଉ ଜଲପାଇଗୁଡ଼ିରେ ଥିବା C.I.S.F. ଇଉନିଟ୍‌ରେ ଆମେ ପହଞ୍ଚିଲା ବେଳକୁ ପ୍ରାୟ ଦଶ ଦୁଇଟା । ତୁଳସୀ ଆମକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । କାରଣ ଆମେ ସେଠି ଚାରିଟା ପରେ ପହଞ୍ଚିବୁ ବୋଲି କହିଥିଲୁ ।

ସେ ତାର ଦ୍ୱିତୀୟ ପତ୍ନୀଙ୍କ ସହିତ ଆମକୁ ପରିଚୟ କରେଇ ଦେଲା । ଜାନୁରୁ ଯୋଉ ଝିଅ ରାଉରକେଲାରେ ବଢ଼ିଛି ତା' ପାଇଁ ଓଡ଼ିଶା ପ୍ରାନ୍ତୀୟ ହେବା ସ୍ୱାଭାବିକ । ମୋର ସେଦିନ ତୁଳସୀକୁ ପ୍ରଥମ ପ୍ରଶ୍ନ ଥିଲା, ତୋର ଦ୍ୱିତୀୟା, ପ୍ରଥମା'ଙ୍କ କଥା ସବୁ ଜାଣିଛନ୍ତି ତ ?

ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ତୁଳସୀ କହିଲା ସବୁ କହି ସାରିଛି । ତଥାପି ସନ୍ଦେହ ମୋଚନ ହୋଇନି । ଯେତିକି ତୁ ଏଠି ପରିଷ୍କାର କରି ଦେଇପାରିବୁ । ଏଇଥିପାଇଁ ତ ତୋତେ ଡକେଇଛି ।

ଖୁବ୍ ଶୀଘ୍ର ଆମେ ଖିଆ ପିଆ ସାରି ତିସ୍ତା ବେରେଜର ଗେଷ୍ଟ ହାଉସକୁ ଗଲୁଁ । ସେଠି ଆମର ରହିବାର ବ୍ୟବସ୍ଥା କରାଯାଇଥିଲା । ତୁଳସୀ ସେ ସବୁ ଆଗରୁ ଖୁବ୍ ପ୍ରମ୍ପ୍ଟ । ସୁନ୍ଦର ଗେଷ୍ଟ ହାଉସ୍‌ଟି । ବିଶାଳ ମଧ୍ୟ । ଅନେକାଂଶରେ ଆମ ରାଉରକେଲାର 'ରାଉରକେଲା ହାଉସ୍' ପରି । ରାଉରକେଲା ଷ୍ଟିଲପ୍ଲାଣ୍ଟର ବିଶାଳତାକୁ ଦେଖିଲେ 'ରାଉରକେଲା ହାଉସ' ପରି ବଡ଼ ଗେଷ୍ଟ ହାଉସ୍‌ଟିର ଯଥାର୍ଥତା ଅନୁମାନ କରିହୁଏ । କିନ୍ତୁ ତିସ୍ତା ନଦୀର ସାମାନ୍ୟ ବେରେଜ କଥା ଚିନ୍ତା କଲେ ଏତେବଡ଼ ବିଶାଳ ଗେଷ୍ଟ ହାଉସ୍ ଓ ତାର ବର୍ଣ୍ଣାଢ୍ୟ ତଥା ଅଭିଜାତପୂର୍ଣ୍ଣ ପରିବେଶର ଯଥାର୍ଥତା ବୁଝି ହୁଏନା ।

ମୁଁ ତୁଳସୀକୁ ପଚାରିଲି । ସେ କହିଲା ଜୀବନରୁ ଶିର୍ କାଢ଼ିବା ତୋର ଅଭ୍ୟାସ । ତୁ ବୁଲିବାକୁ ଆସିଚୁ । ତେଣୁ ତୋ ପାଇଁ ଭଲ ଗେଷ୍ଟ ହାଉସ୍‌ଟିଏ ଠିକ୍ କରିଛି । ମୋତେ ଏତେ କଥା ପଚାରିଲେ ମୁଁ ତାର ଉତ୍ତର ଦେଇ ପାରିବିନି । ତେବେ ଏତିକି କହିପାରେ ଏ ଗେଷ୍ଟ ହାଉସ୍ ତିସ୍ତା ପାଇଁ ନୁହେଁ ।

ଏଇଟା ଦାର୍ଜିଲିଂ, ନେପାଳ, ଭୁଟାନ ଏବଂ ସିକମ୍‌ରେ ଭ୍ରମଣକୁ ଆଖି ଆଗରେ ରଖି ଯୋଉମାନେ ସରକାରୀ କାମରେ ଆସିବେ ସେମାନେ ଯଦି ଏ ସବୁ ସ୍ଥାନ ନ ଦେଖନ୍ତି, ଏପରି ଅତିଥିଶାଳାରେ ରାତ୍ରି ଯାପନ ନ କରନ୍ତି ତେବେ ତାଙ୍କ ଇନସପେକ୍‌ସନ ନୋଟରେ ଏବଂ ଏଠାରେ ଥିବା ଅଫିସରଙ୍କ ଗୁପ୍ତ ଚରିତ୍ର ଟିପ୍‌ପଣୀରେ ଅନୁକୂଳ ମନ୍ତବ୍ୟ ଦେଇ ପାରିବେତ ? ତୁ ନିଜେ କଅଣ ଏକଥା ଜାଣିନୁ ?

ମୁଁ ଚୁପ୍ ହୋଇଗଲି ।

ମୋର ଦୀର୍ଘ ୨୮ ବର୍ଷର ଅନୁଭୂତି ତଥା ଅଭିଜ୍ଞତାକୁ ମିଶେଇ ମୁଁ ପବ୍ଲିକ ସେକ୍ଟରମାନଙ୍କ ବିଷୟରେ ଏତିକି କହିବି ଯେ ଭାରତର ସ୍ୱାଧୀନତା ପରେ ତାର ଓ୍ୱାର୍କ କଲଚର ଯେତିକି ଶୀଘ୍ର ଧ୍ୱଂସ ପାଉଛି, ଗେଷ୍ଟ ହାଉସ୍, ହୋଟେଲ୍ ଏବଂ ଟ୍ରାଭେଲ କଲଚର ସେତିକି ଦ୍ରୁତ ଗତିରେ ଉପରକୁ ଉଠୁଛି ।

ଆମେ ଗେଷ୍ଟ ହାଉସ୍ ଛାତ ଉପରକୁ ଉଠି ଗଲୁଁ । ତୁଳସୀ ବସ୍ତୁକୁ କହିଲି ସେଇଠିକୁ ଚା' ନେଇ ଆସିବାକୁ । ତିନି ମହଲା କୋଠାର ଛାତ ଉପରୁ ଅନେକ ଦୂରରୁ ପାହାଡ଼ର ଛାତି ଚିରି ତିସ୍ତାନଦୀ ବହି ଆସିଛି ଅଙ୍କେଇ ବଙ୍କେଇ ସାପ ପରି । ଖରସ୍ରୋତା ଚକ୍‌ଚକ୍ କରୁଛି ତା' ଦେହ । ସେ ଶୋଭାର ପସରା ଭୁଲି ହେବନି । ଠିକ୍ ସେମିତି ଅଳ୍ପ ଦୂରରେ ଆଉ ଗୋଟିଏ ନଦୀ । ତା ନା ବାଲସୋନ୍ ।

ଚା' ପିଉ ପିଉ ଆମେ ଠିକ୍ କଲୁ ଯେ ସେଦିନ ରାତିଟା ଆମେ ସେଇ ଗେଷ୍ଟ ହାଉସ୍‌ରେ କଟେଇ ତା' ପରଦିନ ଯିବୁ ଖୁଲୁ ଘରକୁ ।

ପରଦିନ ସକାଳ ମୁଁ ପ୍ରଥମେ ଯେତେବେଳେ ଖୁଲୁ ଘରକୁ ଫୋନ କଲି ସେ ସେତେବେଳେ ଆଶ୍ଚର୍ଯ୍ୟ ହୋଇଗଲା । କିନ୍ତୁ ପୂର୍ବାପର କ୍ଷମା ପ୍ରାର୍ଥନା ସହ ମୁଁ ଯେତେବେଳେ ତାକୁ ତୁଳସୀନାଟକର ବିଷୟବସ୍ତୁ ବର୍ଣ୍ଣନା କଲି ସେ ସେତେବେଳେ ଆମର ଗେଷ୍ଟ ହାଉସ୍‌ର ରହଣିକୁ ଉଦାରତାର ସହିତ ଗ୍ରହଣ କରିଗଲା ।

ସେଦିନ ଆମେ ଖୁଲୁ ଘରେ ପୂର୍ବାପର ଏକ ପାରିବାରିକ ପରିବେଶ ଭିତରେ କଟେଇଲୁଁ । ଡକ୍ଟର ଡାସ ଆର୍ମିରେ ମେଡ଼ିସିନ ସ୍ପେସିଆଲିଷ୍ଟ ଥିଲେ । ଏବେ ସ୍ୱଇଚ୍ଛାରେ ଅବସର ନେଇ ସିଲିଗୁଡ଼ିରେ ପ୍ରାଇଭେଟ ପ୍ରାକ୍‌ଟିସ କରୁଛନ୍ତି । ତାଙ୍କୁ ଗୋଟାଏ ମିନଟ ବିଶ୍ରାମ ନାହିଁ । ଅନେକ ଦିନ ପରେ ଆମେ ଭେଟାଭେଟି ହୋଇଥିବାରୁ ଆମକୁ ଆଉ ସେ ଦିନଟା ମୋଟେ ଜଣା ପଡ଼ିଲାନି ।

—୦—

# ଟୟ୍‌ଟ୍ରେନ୍ ଓ ତାର ଇତିହାସ

ପରଦିନ ସକାଳ ସାତଟା ବେଳକୁ ଆମେ ବାହାରି ପଡ଼ିଲୁ । ମୁଁ, ଝୁମ୍ପୁ ଓ ମୋ ସ୍ତ୍ରୀ । ଏଥର ସାଥିରେ ଥିଲା ତମାଙ୍ଗ । ଆମ ଡିପାର୍ଟମେଣ୍ଟରେ କାମ କରେ । ତାକୁ ଏଥର ସାଥିରେ ନେବାର ଉଦ୍ଦେଶ୍ୟ ହେଲା ସେ ଦାର୍ଜିଲିଂ ଅଞ୍ଚଳର ଲୋକ । ମୋତେ ବାଟ କଢ଼େଇ ନେବ । ତା ସାଥିରେ ତା ଘରକୁ ଯାଇ, ତା ଗାଁ ବୁଲିବି । ସେଠାରେ ସେମାନଙ୍କର ଆଚାର ବ୍ୟବହାର ଚଳଣି ଇତ୍ୟାଦି ବୁଝିବି । ଅନେକ ଆଗରୁ ଜାଣିଥିଲି ନେପାଳୀମାନେ ପାର୍ବତ୍ୟ ଉପତ୍ୟକାର ଲୋକ ହୋଇଥିଲେ ମଧ୍ୟ ସେମାନଙ୍କର ସାହିତ୍ୟ, ଇତିହାସ ସଂସ୍କୃତି ଅତି ଉନ୍ନତ ଧରଣର । ତମାଙ୍ଗ ଏଥିପାଇଁ ମୋତେ ସାହାଯ୍ୟ କରିବ ।

ସିଲିଗୁଡ଼ି ସହର ପାରହେଲା ପରେ ଆରମ୍ଭ ହେଲା ସୁନ୍ଦର ପିଚୁ ରାସ୍ତା । ଘଞ୍ଚ ଜଙ୍ଗଲର ଗ୍ରୁଡ ଚିରି ସିଧା ହିମାଳୟ ଆଡ଼କୁ ମାଡ଼ିଯାଇଛି ।

ଆମ ଗାଡ଼ି ପାହାଡ଼ ପାଖ ହେଲା ବେଳକୁ ଆମେ ସବୁ ପ୍ରାୟ ନୀରବ ହୋଇ ଯାଇଥାଉ । ମୋ ଆଖି ଲାଖି ଯାଇଥାଏ ଆକାଶ ଛୁଆଁ ପାହାଡ଼ ଓ ତା ଦେହରେ ଛିଣ୍ଡା ଛିଣ୍ଡା ପାଉଁଶିଆ ମେଘର ଦଉଡ଼ । ତାରି ଭିତରେ ଠିଆ ହୋଇଥାଏ ଲମ୍ବା ଲମ୍ବା ପାଇନ ଓ ଓକ୍ ଗଛ । ଶ୍ୟାମଳ ସବୁଜିମାର ପ୍ରାଣ ପ୍ରାଚୁର୍ଯ୍ୟ ।

ଝୁକୁ ପାଟିକଲା—ଏଇ ଦେଖ ଏ ପାଖକୁ । ଭୂପେନ ଭାଇ ସେ ପାଖରେ କ'ଣ ଦେଖୁଛ ମ ?

ଆମେ ଦୁହେଁ ଅନେଇଲୁ । ସତେ ତ ? ସତେ ଯେମିତି ଆମ ମଥା ଉପରୁ ଚକ୍କର କାଟି ଟୟ ଟ୍ରେନ ତଳକୁ ଓହ୍ଲେଇ ଆସୁଛି । ଆମେ ଟୟଟ୍ରେନ କଥା ଏକଦମ୍ ଭୁଲି ଯାଇଥିଲୁ । ଇଚ୍ଛା ହେଉଛି ଦାର୍ଜିଲିଂ ଯାଇ ଏଇ ଟ୍ରେନରେ ପୁଣି ସିଲିଗୁଡ଼ି ଫେରି ଆସନ୍ତି । ସାତ ହଜାର ଫୁଟ ଉପରୁ ତଳକୁ ପାହାଡ଼ ଦେହରେ ଚକର କାଟି ଟ୍ରେନଟି ଓହ୍ଲାଉ ଥିଲାବେଳେ ସେଇ ଅପୂର୍ବ ଦୃଶ୍ୟ ସୃଷ୍ଟି ହୁଏ ତାହା ଯାତ୍ରୀମାନଙ୍କୁ ପାଗଳ କରିଦିଏ ବୋଲି ମୁଁ ଅନେକଙ୍କଠାରୁ ଶୁଣିଛି । ସିଲିଗୁଡ଼ିରୁ ଦାର୍ଜିଲିଂ ଯାଏ ଟୟ ଟ୍ରେନର ଲାଇନ ଏବଂ ସଡ଼କ ଦୁହେଁ ଯେମିତି ହାତ ଧରାଧରି ହୋଇ ଉପରକୁ ଉଠି ଯାଇଛନ୍ତି ।

ଏକଥା କହିବା ଅନାବଶ୍ୟକ ଯେ ପ୍ରାୟ ୧୧୫ ବର୍ଷ ପୂର୍ବେ ଯଦି ଏହି ରେଳ ରାସ୍ତାଟି ତିଆରି ହୋଇ ନଥାନ୍ତା ତେବେ ବୋଧେ ଆଜଯାଏ କେବଳ ଭାରତରେ କାହିଁକି ପୃଥିବୀର ଅନ୍ୟତମ ସୁନ୍ଦର ସହର ଦର୍ଶନୀୟ ସ୍ଥାନ ଦାର୍ଜିଲିଂର ବୈଭବ ଲୋକଲୋଚନକୁ ଅଗୋଚର ରହିଥାନ୍ତା ।

ତମେ ଏ ଟ୍ରେନର ଇତିହାସ ବିଷୟରେ କିଛି ଜାଣିଛ ? ଝୁନୁ ମୋତେ ପଚାରିଲା । ଆରେ ଜାଣିଥିଲେ ତୋତେ କାହିଁକି ସାଙ୍ଗରେ ଆଣିଥାନ୍ତି ? ତୁ ତ ଆମର ଗାଇଡ୍ ।

ରହସ୍ୟ କରିବାକୁ ଯାଇ ମୋ ସ୍ତ୍ରୀ କହିଲେ, ଯେ ଯଦି ତୁମର ଗାଇଡ୍ ତେବେ ତାକୁ ତାର ପାଉଣା ଦେବାକୁ ହେବ ।

ମୁଁ କହିଲି ସେଥିରେ ମୋର ଆପତ୍ତି ନାହିଁ । ତେଣୁ ପ୍ରତିଶ୍ରୁତି ଦେଉଛି ଦାର୍ଜିଲିଂରେ ପହଞ୍ଚି ସେ ଯୋଉ ହୋଟେଲରେ ଖାଇବାକୁ ଚାହିଁବ ସେଥିରେ ମୁଁ ତାକୁ ଖୁଆଇବି ଏବଂ ଯାହା ଖାଇବାକୁ ଚାହିଁବ ତାକୁ ମଧ୍ୟ ଦିଆଯିବ ।

ସେ କହିଲା ମୁଁ ମୋଟେ କିଛି ଖାଏନି ବୋଲି ତମେ ଏମିତି କହୁଛ କି ? ତମେତ ଜାଣ ମୋର ଖିଆ ପିଆରେ ଅନେକ କଣ୍ଟ୍ରୋଲ ।

ଟୟଟ୍ରେନ ବିଷୟରେ ଝୁନୁ ଆରମ୍ଭ କଲା । ତମେ ଯାହାକୁ ଟୟଟ୍ରେନ କହୁଛ ସେଇଟା ପ୍ରକୃତରେ ଟୟଟ୍ରେନ ନୁହେଁ । ସେ ସମୟରେ ସେଇଟା ପ୍ରକୃତ ଟ୍ରେନ । ତାର ଇତିହାସ ବେଶ ଆକର୍ଷଣୀୟ । ଭାରତର ଅନେକ ଲୋକ ରେଳ ସଂପର୍କରେ ଅନେକ କଥା ଲେଖିଥିଲେ ମଧ୍ୟ ଏ ରେଳଗାଡ଼ିର ସୃଷ୍ଟି ରହସ୍ୟ ଉପରେ ଖୁବ୍ କମ୍ କଥା ଲେଖାଯାଇଛି । ଝୁନୁ କହିଲା ତମେ କଲିକତାର ନେସନାଲ ଲାଇବ୍ରେରୀକୁ ଯାଅ କିମ୍ବା ଏସିଆଟିକ ସୋସାଇଟିକୁ ଯାଅ କିମ୍ବା ଦିଲ୍ଲୀର ରେଳ ଭବନକୁ ଯାଅ, କୋଉଠି ହେଲେ ଏ ରେଳ ଲାଇନର ସମ୍ପୂର୍ଣ୍ଣ ଇତିହାସ ତମେ ପାଇବନି ।

ମୁଁ ତାକୁ ପଚାରିଲି ତେବେ ତୁ କୋଉଠୁ ଜାଣିଲୁ ?

ସେ କହିଲା ଏସବୁ ମୋ ଟିଚରସିପ୍‌ର ଏକ ଅଂଶ । ଏସବୁ ନ ଜାଣିଲେ ମୁଁ ପିଲାଙ୍କୁ କଅଣ କହିବି ?

ସେ କହିଲା, ଫ୍ରାଙ୍କଲିନ୍ ପ୍ରେଷ୍ଟେଜ ଥିଲେ ଏ ରେଳ ଲାଇନର ଜନ୍ମଦାତା । ସେ ସେତେବେଳେ ଇଷ୍ଟ ବେଙ୍ଗଲ ରେଲୱେର ଥିଲେ ଜଣେ ଏଜେଣ୍ଟ । ଏହି ୮୧-୪୮ କିଲୋମିଟରର ରେଳ ଲାଇନର ନିର୍ମାଣ କାମ ୧୮୭୯ ମସିହା ମେ ମାସରେ ଆରମ୍ଭ ହୋଇ ୧୮୮୫ ଜୁନ୍ ୧୬ ତାରିଖରେ ଟ୍ରେନଟି

ପର୍ଯ୍ୟାୟରେ ଶେଷ ହୋଇଥିଲା । ତାର ପ୍ରଥମ ଭାଗର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା ୧୮୮୦ ମସିହା ମାର୍ଚ୍ଚ ୧୬ ତାରିଖରେ । ଭାରତର ତତ୍କାଳୀନ ଭାଇସରାୟ ତଥା ଗଭର୍ଣ୍ଣର ଜେନେରେଲ ଲର୍ଡ଼ ଲିଟନ ଏକ ବହୁ ଆଡ଼ମ୍ବର ପୂର୍ଣ୍ଣ ଉତ୍ସବରେ ତାର ଉଦ୍‌ଘାଟନୀ ଯାତ୍ରା ଆରମ୍ଭ କରିଥିଲେ । ସେତେବେଳେ ସେ ତାଙ୍କ ଭାଷଣରେ କହିଥିଲେ ଯେ ଦିନେ ଏହି ରେଳ ଲାଇନ ଭାରତର ଅନ୍ୟତମ ସୁନ୍ଦର ସ୍ଥାନ ଦାର୍ଜିଲିଂକୁ ପୃଥିବୀ ପ୍ରସିଦ୍ଧ କରାଇବ ।

ଖୁବ୍ କ୍ଲାସ୍ ରୁମ୍‌ରେ ପିଲାଙ୍କୁ ଗପ ଶୁଣାଇଲା ଭଳି କହି ଚାଲିଥାଏ ।

ସେ କହିଲା ସେତେବେଳେ ଦାର୍ଜିଲିଂ ମୁଖ୍ୟତଃ ବ୍ରିଟିଶ୍ ସୈନ୍ୟମାନଙ୍କର ଅବସରକାଳୀନ ବାସସ୍ଥାନ ଥିଲା । ଅସୁସ୍ଥ କର୍ମଚାରୀମାନଙ୍କୁ ମଧ୍ୟ ସେଠାକୁ ପଠାଯାଉଥିଲା ଜଳବାୟୁ ପରିବର୍ତ୍ତନ ଉଦ୍ଦେଶ୍ୟରେ । ତା'ଛଡ଼ା ସେ ଅଞ୍ଚଳରେ ପ୍ରଚୁର ପରିମାଣରେ ମିଳୁଥିଲା ବିଶ୍ୱବିଖ୍ୟାତ ଚା', କଫି, ସପୁରି ଓ ଅନ୍ୟାନ୍ୟ ପାହାଡ଼ିଆ ଫଳ ଯାହାକୁ ଇଂରେଜମାନେ ସେତେବେଳେ ବ୍ରିଟେନକୁ ରପ୍ତାନି କରୁଥିଲେ । ତେଣୁ ଏଇ ପ୍ରକାର ସୈନ୍ୟ ତଥା ଅନ୍ୟାନ୍ୟ ଗୋରା କର୍ମଚାରୀ-ମାନଙ୍କର ସିଲିଗୁଡ଼ିରୁ ଦାର୍ଜିଲିଂ ପର୍ଯ୍ୟନ୍ତ ଯିବା ଆସିବା ପାଇଁ ରେଳ ରାସ୍ତାର ଆବଶ୍ୟକତା ଥିଲା । ସେତେବେଳେ ସେଠାକୁ ଯିବାକୁ ଅନ୍ୟ କୌଣସି ଉପାୟ ନଥିଲା । ଅବଶ୍ୟ ପାଦଚଲା ରାସ୍ତା ନିଶ୍ଚୟ ଥିଲା ।

ଆମେ ସବୁ ପରୀ କାହାଣୀ ପରି ତା' ମୁହଁରୁ ଶୁଣିଯାଉ ଥାଉ ।

ସେ ପୁଣି କହିଲା, ୧୮୮୫ ପୂର୍ବରୁ ଦାର୍ଜିଲିଂ କଥା ଭାରତର ଲୋକମାନଙ୍କୁ ମୋଟେ ଜଣା ନଥିଲା କହିଲେ ଚଳେ । ଦାର୍ଜିଲିଂ କଥା ଛାଡ଼ ସିଲିଗୁଡ଼ି ସେତେବେଳେ ଥିଲା ସାମାନ୍ୟ କେତୋଟି ଟିଣ ଘରର ଗାଁ । ପାଖରେ ଗୋଟିଏ ଛୋଟ ରେଳ ଷ୍ଟେସନ । ଏପରି ଅବସ୍ଥାରେ ୭୬୯୦ ଫୁଟର ଦୁର୍ଗମ ପାହାଡ଼ ଉପରେ ରେଳ ଲାଇନ ବିଛାଇବା ପାଇଁ ଫ୍ରାଙ୍କଲିନ ସାହେବ କେତେ ପରିଶ୍ରମ କରିଥିବେ ତାହା ଅନୁମାନ କରାଯାଇ ପାରେ ।

ମୁଁ ପଚାରିଲି ତା ପୂର୍ବରୁ କଅଣ ପୃଥିବୀରେ ଆଉ କୋଉଠି ଏତେ ଉଚ୍ଚରେ ରେଳ ଲାଇନ ବିଛା ହୋଇ ନଥିଲା ?

ସେ କହିଲା, ଥିଲା । ୧୮୩୯ରେ ଇଉରୋପର ଆଲପସ୍ ପର୍ବତମାଳାରେ ସି. ଏମ୍. ଲେମିଂଘିଆ ନାମକ ଜଣେ ଇଂଜିନିଅର ସମୁଦ୍ର ପତନର ୭୦୦୦ ଫୁଟ ଉପରେ ରେଳ ଲାଇନ ନିର୍ମାଣ କରି ଗାଡ଼ି ଚଳାଇ ପାରିଥିଲେ । କିନ୍ତୁ ଫ୍ରାଙ୍କଲିନ ଦାର୍ଜିଲିଂର ୭୬୯୦ ଫୁଟ ଉପରେ ରେଲଗାଡ଼ି ଚଳେଇ ପାରିଥିବାରୁ ତାଙ୍କ ସ୍ଥାନ ପୃଥିବୀର ରେଲବାଇର ଇତିହାସରେ ପ୍ରଥମ । ଦାର୍ଜିଲିଂ ରେଳ ଲାଇନର

ବିଶେଷତ୍ୱ ହେଲା ତାର 'ଶସର୍ଭ ସିଷ୍ଟମ' ବା ପଶ୍ଚାତ୍ ଗତି । ଏଇ ସିଷ୍ଟମ ଅନୁସାରେ ଗାଡ଼ି ପ୍ରଥମେ ତଳକୁ ଗତିକରେ ଏବଂ ସେଇ ସ୍ପିଡ୍‌ରେ ପୁଣି ଉପରକୁ ଉଠିଯାଏ । ଫଳରେ ଇଂଜିନ ଉପରେ ବେଶୀ ଚାପ ପଡ଼େନାହିଁ । ଏ ସିଷ୍ଟମ୍ ପୃଥିବୀର ଅନ୍ୟ କୌଣସି ରେଳବାଇରେ ବ୍ୟବହୃତ ହୁଏନାହିଁ ।

କିନ୍ତୁ ଦୁଃଖର କଥା କଅଣ ଜାଣିଚ ? ଏ ପ୍ରକାର ଜଣେ ବିଶ୍ୱବିଖ୍ୟାତ ଇଂଜିନିଅରଙ୍କୁ ଆଜି ଆଉ କେହି ମନେ ରଖି ନାହାନ୍ତି । ତେବେ ଦାର୍ଜିଲିଂ ମ୍ୟୁନିସିପାଲିଟିକୁ ଧନ୍ୟବାଦ ଯେ ସେମାନେ ମ୍ୟୁନିସିପାଲିଟିର ଶତବାର୍ଷିକୀ ପାଳନ କରୁଥିବା ବେଳେ ପ୍ରେସଟେଜ ପ୍ରଙ୍କ୍ଲିନଙ୍କ ନାମାନୁସାରେ ଗୋଟିଏ ରାସ୍ତାର ନାମ 'ପ୍ରେସଟେଜ ରୋଡ଼' ବୋଲି ଏବେ ରଖିଛନ୍ତି ।

ଗପ କରୁ କରୁ କେତେବେଳେ ଆମେ କରସିଆଂ ସହରରେ ପହଞ୍ଚି ଗଲୁଣି ସେ କଥା ଆମକୁ ଜଣା ନଥାଏ । ହଠାତ୍ ସହର ଭିତରକୁ ପଶିବାର ଦେଖି ମୁଁ ଝୁନୁକୁ ପଚାରିଲି କଅଣ ଦାର୍ଜିଲିଂ ଆସିଗଲା ? ସେ କହିଲା ନା, ରାସ୍ତା ଅଧା ହେଲା ବୋଲି ଜାଣ । ସେ ଡ୍ରାଇଭରକୁ କହିଲା ଗାଡ଼ି ରଖ ।

କଅଣ ହେଲା ? ମୁଁ ପଚାରିଲି ।

ସେ କହିଲା କପେ ଚା' ପିଇବାନି ? ଏଠାକାର ଚା' ଟିକିଏ ଟେଷ୍ଟ କର ।

ଆମେ ସମସ୍ତେ ଓହ୍ଲାଇଲୁଁ । କରସିଆଂ ରେଳ ଷ୍ଟେସନ ପାଖରେ ବସ୍ ଷ୍ଟାଣ୍ଡ ମଧ୍ୟ । ଅନେକ ଗୁଡ଼ାଏ ଦୋକାନ । ସବୁ ଗୁଡ଼ିକରେ ସାଧାରଣତଃ ମହିଳାମାନେହିଁ କର୍ମକର୍ତ୍ତା । ଖୁବ୍ କମ୍ ପୁରୁଷ ଲୋକ ଦୋକାନରେ ବସି ଥିବାର ଦେଖିଲୁଁ । ଅଧିକାଂଶଙ୍କ ଦେହରେ ଗରମ କୋଟ୍ ନଚେତ୍ ସାଲ ।

ଆମକୁ ବି ଶୀତ ଲାଗୁଥାଏ । କାର୍ ଭିତରେ ଥିଲାବେଳେ ଅବଶ୍ୟ ଜଣା ପଡୁ ନଥାଏ । ପାଗ ବି ମେଘୁଆ ଥାଏ । କୁହୁଡ଼ିର ଗୋଟାଏ ମୋଟା ପରଦା ବାୟୁ ମଣ୍ଡଳକୁ ଘେରି ରହିଥାଏ ।

କରସିଆଂ ସହର ସେତେ ବଡ଼ ନଥିଲେ ମଧ୍ୟ ଛୋଟ ମଧ୍ୟ ନୁହେଁ । କିନ୍ତୁ ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋରମ । ଯେକୌଣସି ସ୍ଥାନରେ ଛିଡ଼ା ହୋଇ ଦେଖିଲେ ମାଇଲ ମାଇଲ ବ୍ୟାପି ବିସ୍ତୀର୍ଣ୍ଣ ଚା' ବଗିଚା । ସୁନ୍ଦର ଭାବେ କଟା ହୋଇଚି । ଚା' ବଗିଚାଗୁଡ଼ିକ ପାହାଡ଼ ମଥାନରୁ ତଳକୁ ଲମ୍ବି ଯାଇଚି । ଦାର୍ଜିଲିଂ ଅଞ୍ଚଳର ଚା' ବଗିଚା ଏବଂ ଆସାମର ଅନ୍ୟାନ୍ୟ ଅଞ୍ଚଳର ଚା' ବଗିଚା ଭିତରେ ଅନେକ ଫରକ । ଆସାମ ଅଞ୍ଚଳର ଚା' ବଗିଚାଗୁଡ଼ିକ ପ୍ରାୟ ସମତଳ ଭୂମି ଉପରେ ମାଇଲ ଲମ୍ବି ଯାଇଥାଏ ।

କରସିଆଙ୍ଗର ରେଲଷ୍ଟେସନ ଦେଖିଲି । ଆମ ଅଞ୍ଚଳର ରେଲଷ୍ଟେସନ ପରି ନୁହେଁ । ତେବେ କରସିଆଙ୍ଗର ରେଲଷ୍ଟେସନଟି ସିଲିଗୁଡ଼ିରୁ ଦାର୍ଜିଲିଂ ଯାଇଥିବା ସେଇ ସୂକ୍ଷ୍ମ କଥିତ ଟଏଟ୍ରେନର ଗୋଟିଏ ଷ୍ଟେସନ । ତେଣୁ ତାକୁ ଆମ ଷ୍ଟେସନ ସହିତ ତୁଳନା କରିବା ଉଚିତ ନୁହେଁ । ଷ୍ଟେସନ ଘରଗୁଡ଼ିକ ପୁରୁଣା ମନେ ହେଲା । କୌଣସି ଛବିରେ ଦେଖିଥିବା ଇଂଲଣ୍ଡ କି ଆମେରିକାର ପୁରୁଣା ତଥା ଗ୍ରାମ୍ୟ ପରିବେଶର ଘର ପରି ମନେହେଲା । ତେବେ ନିଶ୍ଚିତ ରୂପେ ତାର ଓକାଲତିନଗୁଡ଼ିକ ଇଂରେଜ ଅମଳର ଏଥିରେ ସନ୍ଦେହ ନାହିଁ ।

ଗ୍ୟ'କପେ ଖାଇ ସାରି ଦେହକୁ ଟିକିଏ ତାଜା କରି ଆମେ ପୁଣି ଆଗେଇଲୁଁ । କରସିଆଙ୍ଗରୁ ଦାର୍ଜିଲିଂ ପ୍ରାୟ ଉତ୍ତରଣ କଲୋମିଟର । ପୂର୍ବପରି ପାହାଡ଼ ଉପରକୁ ଉଠିବାକୁ ହୁଏ । ପାହାଡ଼ ପେଟ କାଟି ହୋଇ ଧୂସର ଗିରି ରାସ୍ତା ସାପ ପରି ବଙ୍କେଇ ବଙ୍କେଇ ଉପରକୁ ଉଠିଯାଇଛି । ଏ ରାସ୍ତାର ଅପୂର୍ବ ଦୃଶ୍ୟ ବର୍ଣ୍ଣନା କରିବା ମୋ ପକ୍ଷେ ସମ୍ଭବ ନୁହେଁ । ଘାସଠାରୁ ଆରମ୍ଭ କରି ବଡ଼ ବଡ଼ ଗଛ ପର୍ଯ୍ୟନ୍ତ ଫୁଲରେ ଭର୍ତ୍ତି । ରଙ୍ଗ ବେରଙ୍ଗର ଫୁଲରେ ଗଛ ଲୁଚି ଯାଉଛି ।

ମୁଁ ନନ୍ଦନକାନନ (ଭୁବନେଶ୍ୱରର ନୁହେଁ-ସ୍ୱର୍ଗର) ଦେଖିନି । କିନ୍ତୁ ଯେତିକି ବର୍ଣ୍ଣନା ଶୁଣିଛି ସେଥିରୁ ମନେ ମନେ ତାର ଗୋଟାଏ ସମ୍ଭାବ୍ୟ ଚିତ୍ର ଅନେକ ଦିନୁ ମୋ ଭିତରେ ଆସ୍ଥାନ ମାଡ଼ି ବସିଛି । କିନ୍ତୁ ଦାର୍ଜିଲିଂର ବଣ ଜଙ୍ଗଲ ଓ ତାର ଫୁଲ ଦେଖି ମୁଁ ସେ ନନ୍ଦନକାନନ କଥା ଭୁଲିଗଲି ।

ସେଠି କୁଆଡ଼େ ଗ୍ୟାରି ହଜାର ପ୍ରକାରର ନାଁ ଜଣାଥିବା ଓ ଆଉ ତିନି ହଜାର ଜାତିର ଜଙ୍ଗଲୀ ଫୁଲ ଅଛି ବୋଲି ଖୁକୁ ଆମକୁ କହିଲା । ଉଦ୍ଭିଦ ବୈଜ୍ଞାନିମାନେ ଏ ଯାଏ ସେ ଜଙ୍ଗଲୀ ଫୁଲକୁ ଚିହ୍ନଟ କରି ନଥିବେ ବୋଲି ମୋର ବିଶ୍ୱାସ ହେଲା ନାହିଁ । କିନ୍ତୁ ଦେଖିଲି ଗଛ ଭର୍ତ୍ତି ଫୁଲ । ଯେତିକି ରଙ୍ଗ, ସେତିକି ସୌନ୍ଦର୍ଯ୍ୟ । ଯେତିକି ଫୁଲ, ସେତିକି ଫକ୍କଣ ।

ସେ ରାସ୍ତାର ଆଉ ଗୋଟିଏ ମନୋରମ ଦୃଶ୍ୟ ହେଲା ପାହାଡ଼ ଉପରେ ଚକ୍କର କାଟି ଗାଡ଼ି ଉପରକୁ ଉଠୁଥିବା ବେଳେ ଜଣେ ଦେଖିବ ଠିକ୍ ତାର ହଜାରେ ଫୁଟ ତଳେ ଆଉ ଗୋଟିଏ ଗାଡ଼ି ମଧ୍ୟ ଉଠୁଛି ଏବଂ ତାର ଆଉ ଦୁଇ ହଜାର ଫୁଟ ତଳେ ଆଉ ଗୋଟିଏ ଗାଡ଼ି ମଧ୍ୟ ଉଠୁଛି । ଏ ଦୃଶ୍ୟଟା ବେଶ ମଜା ଲାଗେ । ଦାର୍ଜିଲିଂ ପାହାଡ଼ରେ ଚା' ବଗିଚା ଥିବାରୁ ଏ ଦୃଶ୍ୟ ଦେଖି ହୁଏ । ଅନ୍ୟ ପାହାଡ଼ରେ ଘଞ୍ଚ ବଣ ଜଙ୍ଗଲ ଥିବାରୁ ଏ ଦୃଶ୍ୟ ଦେଖି ହୁଏନା ।

ରାସ୍ତାର ଦୁଇ ଧାରରେ ଏ ଦୃଶ୍ୟ ଦେଖୁ ଦେଖୁ ମୁଁ ନିର୍ବାକ ଓ ନିସ୍ପନ୍ଦ ହୋଇ ଯାଉଥିଲି ।

ହଠାତ୍ ଆମ ଗାଡ଼ି ଅଟକିଲା ।

ପୁଣି କ'ଣ ହେଲା ? ମୁଁ କହିଲି ।

ଏଇଠି ସମସ୍ତେ ଓହ୍ଲାଅ । ଏଇଟା ଦାର୍ଜିଲିଂ । ଖୁକୁ କହିଲା । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏତେ ଶୀଘ୍ର ଆମେ ଦାର୍ଜିଲିଂରେ ପହଞ୍ଚିଗଲୁଁ । ମୋ ସ୍ୱପ୍ନର ସହର । ଆମେ ସମସ୍ତେ ଗାଡ଼ିରୁ ଓହ୍ଲାଇଲୁ ।

ଆମେ ଗୋଟାଏ ହୋଟେଲକୁ ଉଠିଗଲୁ । ଦାର୍ଜିଲିଂରେ ଗୋଟାଏ ରାତି ଅନ୍ତତଃ ପକ୍ଷେ ନ କଟେଇଲେ ଦାର୍ଜିଲିଂ ଦେଖି ହୁଏନା । ତେଣୁ ଗୋଟାଏ ରାତି ସେଠି ବିତେଇବା ପାଇଁ ଆମେ ପ୍ରସ୍ତୁତ ହୋଇ ଯାଇଥିଲୁ ।

ହୋଟେଲରେ ମୁହଁ ହାତ ଧୋଇ ସାମାନ୍ୟ ଜଳଖିଆ ଖାଇ ଆମେ ବାହାରି ଗଲୁଁ ମାର୍କେଟ ଆଡ଼େ । ଖୁକୁ ଆମ ପ୍ରୋଗ୍ରାମଟିକୁ ଆଗରୁ ସେଟ୍ କରି ଦେଇଥାଏ । ତେଣୁ ଆମକୁ ସେଥିପାଇଁ ଚିନ୍ତା କରିବାକୁ ପଡ଼େନା । ଆମେ କେବଳ ଅତ୍ୟନ୍ତ ଆଜ୍ଞାବହ ଭାବରେ ତା' ପଛେ ପଛେ ଚାଲୁଥାଉ ।

ମେନ ମାର୍କେଟରେତ ସେମିତି କିଛି ଦେଖିବାର ନଥିଲା । ସାମାନ୍ୟ କିଛି କିଣାକିଣି କଲୁ । ଗରମ କପଡ଼ା ଅପେକ୍ଷାକୃତ ଶସ୍ତା ମନେହେଲା । ପ୍ରଚୁର ମିଳେ ଏବଂ ବର୍ଷଯାକ ମିଳେ ।

ମୁଁ ଆଗରୁ କହିଛି ଦାର୍ଜିଲିଂ ବଜାରରେ ପ୍ରଚୁର ମହିଳା । ସେଠି ମହିଳାମାନେହିଁ ସବୁ କାମ କରନ୍ତି । ନେପାଳୀ ମହିଳାମାନେ ଏସବୁ କାମରେ ପୁରୁଷମାନଙ୍କୁ ପ୍ରାୟ ଆଗଭର ହେବାକୁ ଦିଅନ୍ତିନି ।

ପ୍ରଧାନ ମାର୍କେଟ ପାଖରେ ଆମେ ଗୋଟାଏ ଅପୂର୍ବ ଦୃଶ୍ୟ ଦେଖିଲୁ । ଗୋଟାଏ ବିରାଟ ଫୁଲ ମାର୍କେଟ । ମୁଁ ମାଡ୍ରାସର ଫୁଲ ମାର୍କେଟ ଦେଖିଛି । ସେଠୁ ଫୁଲସବୁ ଉଡ଼ାଜାହାଜରେ ଯାଇ ଆମେରିକା ଓ ଇଂଲଣ୍ଡ ପ୍ରଭୃତି ଦେଶରେ ବିକ୍ରି ହୁଏ । ତେଣୁ ମାର୍କେଟର ଅଧ କିଲୋମିଟର ଦୂରରୁ ନାକ ଫାଟି ପଡ଼େ । ଗୋଲାପ, ହେନା, ମଲ୍ଲୀର ବାସନା ମସ୍ତିଷ୍କକୁ ସେଠି ମତୁଆଲା କରେ । ଏଠି କିନ୍ତୁ ଅଲଗା । ଏଠି ଫୁଲଗଛ କୁଣ୍ଡସହ ବିକ୍ରି ହୁଏ । ଦେଖିଲେ ମସ୍ତିଷ୍କ ଆତ୍ମହରା ହୋଇଯାଏ ।

—୮—

# ବତାସିଆ ପାହାଡ଼

ବତାସିଆ ପାହାଡ଼ (୭୯୫୦ ଫୁଟ) ବେଶ ଆମୋଦ ଦାୟକ । ପ୍ରବଳ ବେଗରେ ସେଠି କାଲୁଆ ପବନ ବହୁଥାଏ । ଆମ କାନ ପାଟି କନକନେଇ ଉଠିଲା । ବୋଧେ ବେଶୀ ପବନ ବହୁଥିବା'ରୁ ତା ନାଁ ସେମିତ ହୋଇଚି । ଝୁଲୁ ମଧ୍ୟ ସେଇ ଉତ୍ତର ଦେଲା । ସେଇ ପାହାଡ଼ ଉପରୁ କାଞ୍ଚନଜଂଘାର ବରଫ ମୁକୁଟ ବେଶ୍ ପରିଷ୍କାର ଦେଖାଯାଏ । ଆଖି ଝଲସି ଯାଏ ।

ଆମେ ସେଠୁ ଆସିଲୁ ବୁଦ୍ଧ ଗୁମ୍ଫାକୁ । ବୁଦ୍ଧ ଓ ଦଲାଇଲାମାଙ୍କ ବିରାଟ ମୂର୍ତ୍ତି ସେଠି ରହିଚି । ତା ପରେ ଦେଖିଲୁ ଡେନଜିଂ ରକ୍, ମାଉଣ୍ଟେନିଅରିଂ କ୍ଲବ, ରୋପୱେ ଏବଂ ରେସକୋର୍ସ । ହୋଟେଲକୁ ଫେରିଲା ବେଳକୁ ସନ୍ଧ୍ୟା ୭ଟା । ବେଶ୍ ଥଣ୍ଡା ପଡ଼ି ସାରିଥାଏ । ଆଉ ବେଶୀ ସମୟ ବାହାରେ କଟାଇବା ଉଚିତ ମନେ ନକରି ଆମେ ସେଦିନ ସକାଳ ସକାଳ ଖାଇପିଇ ଶୋଇ ପଡ଼ିଲୁ ।

ମୋର ପ୍ରଧାନ ଆକର୍ଷଣ ଥାଏ ଟାଇଗର ହିଲ ଉପରେ । ଯୋଉଠୁ ସୂର୍ଯ୍ୟୋଦୟଟା ଅତି ପାଖରେ ହାତ ପାଆନ୍ତାରେ ବୋଲି ମନେ ହେବ ।

ମୋ ନିଦ ଶେଷରେ ରାତିଟାରୁ ଭାଙ୍ଗି ଗଲା । ସୂର୍ଯ୍ୟାସ୍ତର ଅତ୍ୟାଶ୍ଚର୍ଯ୍ୟରେ ଯେ ସାରାଜୀବନ ଅତ୍ୟାଶ୍ଚର୍ଯ୍ୟ ମୁଁ ହାତ ପାଆନ୍ତାରେ ସୂର୍ଯ୍ୟୋଦୟକୁ ଦେଖିବା ଏବଂ ସମ୍ଭବ ହେଲେ ତାକୁ ଦୁଇ ହାତରେ ଜାବୁଡ଼ି ଧରି କହିବ, ନା ମୁଁ ତୋତେ ଛାଡ଼ିବିନି । ତୋତେ ମୁଁ ଚିରଦିନ ପାଇଁ ଏଇଠି ଏମିତ ଧରି ରଖିବାକୁ ଚାହେଁ ।

ମାତ୍ର ୧୦/୧୨ କିଲୋମିଟର ଟାଇଗର ହିଲ୍ । ଠିକ୍ ମାହେନ୍ଦ୍ର ବେଳା ପୂର୍ବରୁ ନ ପହଞ୍ଚିଲେ ଜୀବନର ଗୋଟାଏ ବିରାଟ ଅବଶୋଷ ରହିଯିବ ।

ମୁଁ ଭାରତର ଅନେକ ସ୍ଥାନରେ ସୂର୍ଯ୍ୟୋଦୟ ଦେଖିଛି । ତଥାପି ଟାଇଗର ହିଲ୍ ଉପରୁ ଥରେ ସୂର୍ଯ୍ୟୋଦୟ ଦେଖିବାର ବାସନାକୁ ମୁଁ ଦମନ କରି ପାରିଲିନି ।

ଟାଇଗର ହିଲ୍ ଉପରେ ଯାଇ ପହଞ୍ଚିଲା ବେଳକୁ ପୂର୍ବ ଦିଗଟା ଫରଚା ହୋଇ ଆସୁଥାଏ । କିନ୍ତୁ ଆମ ଆଗରୁ ଆହୁରି ଅନେକ ଲୋକ ସେଠି ଜମି ଗଲେଣି । କେତେ ଗାଡ଼ି, କାର୍, ଜିପ୍, ଟ୍ରେକର ତାର ସୀମା ନାହିଁ । ବିଦେଶୀ ପର୍ଯ୍ୟଟକ ମଧ୍ୟ ବେଶ୍ କିଛି ପହଞ୍ଚି ଗଲେଣି ।

ସୂର୍ଯ୍ୟ ଉଠିଲ୍ଲ । ଷ୍ଟିଲ ମେଲଟିଂ ସପରୁ ବାହାରୁଥିବା ଆଉଟା ଲୁହା ଲାଲ ଥାଳଅ ପରି । ଓଃ କି ସୁନ୍ଦର କି ମନୋରମ । କି ଆକର୍ଷଣୀୟ । ମୁଁ ସଂବୃତ ହଉ ଶୁଲ୍ଲ ।

ମୁଁ ତାକୁ ହାତ ବଢ଼େଇ ଧରିବାକୁ ଚେଷ୍ଟା କଲି । କ୍ଲକ୍, ଦୁଇ ତିନଥର କ୍ୟାମେରାରେ ନେଇଗଲି । ସେତେବେଳେ ମୋର ପରି ଶବ୍ଦ ଶବ୍ଦ କ୍ୟାମେରା ଝଲସି ଉଠିବ ।

ଦୂରରୁ ଦିଶୁଛି ମାଉଣ୍ଟ ଏଭେରେଷ୍ଟ । ପାକଲା ମୁଣ୍ଡିଆ ବୃଷୀଟି ପରି ଧ୍ୟାନରେ ବସିଛି କୋଉ ଆଦମ କାଳରୁ ।

ପିଛରେ ଖପ୍ ଖପ୍ କରି ସୂର୍ଯ୍ୟ ଆକାଶକୁ ଉଠିଗଲେ ।

ଆମେ ଫେରିଲୁ ସମ୍ପୂର୍ଣ୍ଣ ପରିତୃପ୍ତ ହୃଦୟରେ ।

ଦାର୍ଜିଲିଂରେ କେଇଟା ହ୍ରଦ ମଧ୍ୟ ଅଛି । ଭାରି ସୁନ୍ଦର । ତା ଭିତରୁ ମିରିକ୍ ଲେକ୍ ଅନ୍ୟତମ । ଚାରିପଟେ ବଣ ଜଙ୍ଗଲ ଘେରା ପାହାଡ଼ । ଜାଉ ଜାଉକା ରଙ୍ଗ ବେରଙ୍ଗ ଫୁଲରେ ପାହାଡ଼ ଭର୍ତ୍ତି । ତା'ର ଭିତରେ କାଚକେନ୍ଦ୍ର ପାଣିର ହ୍ରଦ । ଆଖି ଖୋସି ହୋଇଯାଏ । କିଛି ସମୟ ତା କୂଳରେ କଟେଇଲା ପରେ ଆମେ ଫେରି ଆସିଲୁ ।

ତମାଙ୍ଗ ଆମକୁ ବାରମ୍ବାର ଜେଦ୍ଧି ଥାଏ । ତାର ଇଚ୍ଛା ସେ କେମିତି ଆମକୁ ଶୀଘ୍ର ତା ଘରକୁ ନେଇଯିବ । ସେଠି ସେ ଟି' ଜଳଖିଆର ବ୍ୟବସ୍ଥା କରିଛି ।

ଘରେ ପହଞ୍ଚିଲା ବେଳକୁ ଦିନ ଦଶଟା । ଗ୍ରେଟ ଗା ଟିଏ । ପ୍ରଧାନ ରାସ୍ତାରୁ ପ୍ରାୟ ମାଇଲଏ ଭିତରକୁ ପଶିଗଲେ ତା ଗା କରସିଆଙ୍ଗ ଓ ଦାର୍ଜିଲିଂ ମଝିରେ । ଗ୍ରେଟ ଝରଣାଟିଏ ମଧ୍ୟ ଗା ପାଖ ଦେଇ ବହି ଯାଇଛି । ପାହାଡ଼ ଉପରୁ ଝରଣାଟା ଖସି ଆସୁଥିବାରୁ ସେଇଟା ଅଧା ଜଳପ୍ରପାତ ଓ ଅଧା ଝରଣା ପରି ଆମକୁ ଲାଗୁଥାଏ । ସେଇ ଝରଣ ରୁନ୍ଧି ବାଉଁଶ ନଳୀରେ ପାଣି ଆସି ଗାଁ ଭିତରକୁ ମାଡ଼ିଯାଏ । ଅଭିନବ ପନ୍ଥା ଏମିତି ଜଳଯୋଗାଣ ବ୍ୟବସ୍ଥା ମୁଁ ନାଗାଲାଣ୍ଡରେ ମଧ୍ୟ ଦେଖିଥିଲି । ପ୍ରତ୍ୟେକ ଘରେ ଗୋଟିଏ ଗୋଟିଏ ପାଣି ଟାଙ୍କି । ବାଉଁଶ ନଳୀରେ ପାଣି ଆସି ସେଥିରେ ଜମା ହୁଏ । ସେଥିରେ ସରକାର ବା ପଞ୍ଚାୟତର ଟଙ୍କା କିଛି ନଥାଏ ।

ଗା ତ ନୁହେଁ ଗୋଟ'ଏ ଫୁଲ ବଗିଚା କହିଲେ ଚଳେ । ସବୁ ଘର ପ୍ରାୟ ଟିଣର । ଘର ଆଗରେ ଗୁଡ ଉଞ୍ଚା କାଠ ବା ବାଉଁଶର ଧାଡ଼ି ବାନ୍ଧି ତା ଉପରେ ଥାକ ଥାକ ଫୁଲର କୁଣ୍ଡ ଗୁଡ଼ିକ ଏମିତି ସଜା ହୋଇଛି ଯେ ଦୂରରୁ ଗୋଟାଏ ଫୁଲର ତୋରଣ ପରି ମନେହେବ ଆଗରୁ କହିଛି ଫୁଲର ଦାର୍ଜିଲିଂ ବିଶେଷତ୍ବ ।

—*—

# ନେପାଳୀ ସାହିତ୍ୟ

ତମାଙ୍ଗ ଘରେ ସେଦିନ ଅମର ଆସରଟା ଭଲ ଜମିଲା । ମୁଁ ଆସିବି ବୋଲି ସେ ଡାକି ଆଣିଥିଲା ତାର ତିନି ଗୁଣିଜଣ ବନ୍ଧୁଙ୍କୁ । ସେମାନଙ୍କ ଭିତରେ ଥିଲେ ଦୁଇଜଣ ଭଦ୍ର ମହିଳା । ଜଣେ କଲେଜରେ ଅଧ୍ୟାପିକା, ଆଉ ଜଣେ ଦାର୍ଜିଲିଂ ମ୍ୟୁନିସିପାଲ କାଉନ୍‌ସିଲ ଅଫିସରେ କାମ କରନ୍ତି ।

ଅଧ୍ୟାପିକା ମିସେସ୍ ଛେତ୍ରୀ । ବୟସ ଚାଳିଶ ପାଖାପାଖି । ଆଖିରେ ଷ୍ଟିଲ ଫ୍ରେମର ଚଷମା । ସାମ୍ପୁ ଦିଆ ମୁଣ୍ଡବାଲ କାନ୍ଧ ଛୁଇଁଚ ମାତ୍ର । ବୟସ ବଢ଼ି ଆସିଥିଲେ ମଧ୍ୟ ଦେହରେ ଟିକିଏ ବୋଲି ଅନାବଶ୍ୟକ ମେଦର ଉପସ୍ଥିତି କୋଉଠି ଦେଖିଲିନି । ଯଦିଓ ତାଙ୍କୁ ଠିକ୍ ସ୍ଲିମ ବୋଲି କହି ହେବନି, ସ୍ୱରଟା ସ୍ୱାସ୍ଥ୍ୟଲିନ ଅପେକ୍ଷା ଆହୁରି କୋମଳ, ନରମ ଓ ମଧୁର । ଦାର୍ଜିଲିଂ ପାଖରେ ଥିବା ଗୋଟିଏ ପ୍ରାଇଭେଟ କଲେଜର ନେପାଳୀ ବିଭାଗର ଅଧ୍ୟାପିକା । ତାଙ୍କ ପାଖରେ ଥିଲେ ମିସ୍ ପ୍ରଧାନ । ମ୍ୟୁନିସିପାଲ କାଉନ୍‌ସିଲ ଅଫିସରେ କାମ କରନ୍ତି ।

ଯୋଉ ତିନିଜଣ ଭଦ୍ରଲୋକ ଥିଲେ ସେମାନଙ୍କ ଭିତରୁ ଜଣେ ତମାଙ୍ଗର ଭାଇ । ଆର୍ମିରେ କ୍ୟାପ୍‌ଟେନ ଅଛନ୍ତି । ଛୁଟିରେ ଆସିଛନ୍ତି । ଜଣେ ଗାଁର ମୁଖିଆ । ସୁବାସ ଘିସିଂଙ୍କର ପରମ ବନ୍ଧୁ । ଆଉ ଜଣେ ଅନ୍ୟ ଗାଁରୁ ବୁଲି ଆସିଛନ୍ତି କାଳିମ୍ପଂ କରସିଆଙ୍ଗ ସହରରେ କନଟ୍ରାକ୍ଟି କାମ କରନ୍ତି ।

ଘର ଭିତରୁ ଗରମ ଚା'ର ବାସନା ମୋତେ ବ୍ୟସ୍ତ କରି ପକାଉ ଥାଏ । ତେଣୁ ପରିଚୟ ପ୍ରଦାନ ଭିତରେ ମୁଁ ମଝିରେ ମଝିରେ ଅନ୍ୟମନସ୍କ ହୋଇ ପଡ଼ୁଥାଏ ।

ସତର ଅଠର ବର୍ଷର ତନୁପତଳୀ ଝିଅଟିଏ ଟ୍ରେରେ ଚା' ନେଇ ଭିତରକୁ ପଶି ଆସିଲା । ଆମ ସାମନାରେ ଟ୍ରେ ଥୋଇଦେଇ ସେ ହାତ ଯୋଡ଼ି ନମସ୍କାର କଲା ବେଳକୁ ତମାଙ୍ଗ ଭିତରକୁ ଉଠିଗଲା । ଝିଅଟି ମୋଠୁ କିଛି ଦୂରରେ ଠିଆ ହୋଇ ରହିବାର ଦେଖି ମୁଁ ଟିକିଏ ଅପ୍ରତିଭ ହୋଇ ପଡ଼ିଲି ।

ମିସେସ୍ ଛେତ୍ରୀ ପ୍ରଥମେ ଆରମ୍ଭ କଲେ । ଆପଣ ତାଙ୍କୁ ଚିହ୍ନି ନଥିବେ । ସେ ମିସେସ ତମାଙ୍ଗ, ଏଇ ମାସେ ହେଲା ବାହାଘର ହୋଇଛି ।

ତମାଙ୍ଗ ଗୋଟିଏ ଥାକଥାରେ କିଛି ମିଠା, ବିସ୍କୁଟ, କେକ୍ ଇତ୍ୟାଦି ଧରି ଆସି ପହଞ୍ଚିଲା । ମୁଁ ତାକୁ କହିଲି ମିସେସ୍‌ଙ୍କୁ ଟିକିଏ ମୋ ସହିତ ପରିଚୟ କରେଇ ନ ଦେଇ ଖସି ପଳେଇଲୁ ଯେ !

ସମସ୍ତେ ହୋ ହୋ ହସି ଉଠିଲେ ।

ମୁଁ ଦେଖିଲି ମିସେସ ଛେତ୍ରୀ ସେମାନଙ୍କ ଭିତରୁ ଟିକିଏ ବେଶୀ ଟକେଟିଭ । ବୋଧେ ତାଙ୍କ ପ୍ରମୋସନ ତାଙ୍କୁ ସୋସିଓ କରିବ । ଇଂରାଜୀ ମିଡ଼ିଅମରେ ପଢ଼ିଥିବାରୁ ତାଙ୍କର ଇଂରାଜୀ ଉଚ୍ଚାରଣ ମଧ୍ୟ ଅତି ଚମତ୍କାର । ହିନ୍ଦୀ ମଧ୍ୟ ଭଦ୍ରୁମ । ତାଙ୍କୁ କହିଲି ଆପଣଙ୍କ ନେପାଳୀ ଭାଷା ଓ ସାହିତ୍ୟ ଉପରେ ମୋତେ ସମ୍ୟକ ଧାରଣା ଦିଅନ୍ତୁ ।

ସାମାନ୍ୟ ହସି ସେ କହିଲେ ଗୋଟିଏ ପାହାଡ଼ୀ ଜଙ୍ଗଲି ଭାଷା ବିଷୟରେ ଆପଣ କଅଣ ଶୁଣିବେ ? ସେ କହିଲେ ଆମ ଭାଷା ଅନ୍ୟାନ୍ୟ ଭାରତୀୟ ଭାଷା ପରି ଅନେକ ପୁରୁଣା, ତେବେ ଭାନୁଭକ୍ତ ଆଚାର୍ଯ୍ୟ (୧୮୧୪-୧୮୬୯) ହେଉଚନ୍ତି ଆଧୁନିକ ନେପାଳୀ ସାହିତ୍ୟର ଜନ୍ମଦାତା । ଭାରତର ସ୍ୱାଧୀନତା ସଂଗ୍ରାମ ଯେତେବେଳେ ଗୋଟାଏ ନିର୍ଦ୍ଦିଷ୍ଟ ରୂପରେଖ ନେବାକୁ ଯାଉଥାଏ ସେତେବେଳେ ଭାରତର ନେପାଳୀ କବିମାନେ ଚୁପ ହୋଇ ବସି ନାହାନ୍ତି । ସେମାନେ ମଧ୍ୟ ଭାରତର ସମକାଳୀନ କବି ଓ ଲେଖକ ମାନଙ୍କ ସହିତ ହାତ ମିଳେଇଛନ୍ତି । ଭାନୁଭକ୍ତ ତାଙ୍କ "ଭକ୍ତମାଳା" ପୁସ୍ତକରେ ଲେଖିଛନ୍ତି ।

"ବଡ଼େ ଦୁର୍ଲଭ ଜନେ.ସ୍ ଭାରତଭୂମିକୋ ଜନମ ଜନାଲୟ ।"

ତାର ଅର୍ଥ ହେଲା ଭାରତ ଭୂମିରେ ଜନ୍ମଲାଭ କରିବା ବଡ଼ ଦୁର୍ଲଭ ଘଟଣା ।

ଭାନୁଭକ୍ତ ଏଇଠି ପ୍ରଥମ କରି ନେପାଳୀ ଭାଷାରେ ଭାରତ ଶବ୍ଦ ବ୍ୟବହାର କରିଥିବାରୁ ତାଙ୍କର ଭାରତ ପ୍ରତି କେତେ ମମତା ଏଥିରୁ ଜଣାପଡ଼େ ।

ଭାନୁଭକ୍ତ ରାମଭକ୍ତ ମଧ୍ୟ ଥିଲେ । ତେଣୁ ସେ ରାମାୟଣକୁ ନେପାଳୀ ଭାଷାରେ ପ୍ରଥମ କରି ଅନୁବାଦ କରିଥିଲେ ।

ଏହି ଅନୁବାଦ କରିବାକୁ ତାଙ୍କୁ ଦୀର୍ଘ ବାର ବର୍ଷ ସମୟ ଲାଗିଥିଲା (୧୮୪୧-୧୮୫୩) । ଏ ବହିଟି ପ୍ରକାଶିତ ହେଲା ପରେ ତାର ଲୋକପ୍ରିୟତା ଏତେ ବଢ଼ିଗଲା ଯେ ବର୍ତ୍ତମାନ ଲୋକେ ତାକୁ ଘରେ ଘରେ ଆବୃତ୍ତି କରୁଚନ୍ତି । ୧୮୮୭ରେ ପ୍ରଥମେ ବହିଟି ପ୍ରକାଶିତ ହେଲାପରେ ୧୯୮୭ରେ ତାର ପ୍ରକାଶନର ଶତବାର୍ଷିକୀ ପାଳନ କରାଯାଇଥିଲା । ଦାର୍ଜିଲିଂର ନେପାଳୀ ସାହିତ୍ୟ ସମ୍ମେଳନ

ଗୋଟିଏ ଅତି ପୁରୁଣା ଅନୁଷ୍ଠାନ । ଏହି ଅନୁଷ୍ଠାନ ନେପାଳୀ ସାହିତ୍ୟ ଓ ଭାଷାର ପ୍ରଚାର ଓ ପ୍ରସାର ପାଇଁ ବରାବର କାମ କରି ଆସୁଛି । ବର୍ତ୍ତମାନ ଏହି ଅନୁଷ୍ଠାନ ଭାନୁଭକ୍ତଙ୍କର ଅନେକ ବହି ପ୍ରକାଶ କରି ସାରିଲେଣି ।

କଥାର ମୋଡ଼ ବଦଳେଇ ମୁଁ ତାଙ୍କୁ ପଚାରିଲି ଆପଣ ତାକୁ ନେପାଳୀ ଭାଷା କହୁଛନ୍ତି ନା ଗୁର୍ଖା ଭାଷା କହୁଛନ୍ତି ।

ସେ କହିଲେ ସୁବାସ ଘିସିଂ ତାକୁ ଗୁର୍ଖା ଭାଷା ବୋଲି କହୁଛନ୍ତି । ତାଙ୍କ ମତ ହେଉଛି ନେପାଳୀ କହିଲେ କେବଳ ନେପାଳର ଲୋକଙ୍କୁ ବୁଝ ଉଚି । କିନ୍ତୁ ଭାରତରେ ମଧ୍ୟ ନେପାଳୀ ଅଛନ୍ତି । ବିଶେଷ କରି ଭାରତର ଉତ୍ତର ଏବଂ ଉତ୍ତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ବହୁ ସଂଖ୍ୟାରେ ନେପାଳୀ ଅଛନ୍ତି । ସିକମ, ଭୂଟାନ, ତିବ୍‌ବତରେ ମଧ୍ୟ ନେପାଳୀ ଅଛନ୍ତି । ତାଙ୍କ ମତରେ ଗୁର୍ଖା ଶବ୍ଦ ପ୍ରୟୋଗ କଲେ ଏ ସମସ୍ତଙ୍କୁ ବୁଝେଇବ । ତେବେ ସେ ଯା' ହେଉ ସେଇଟା ଏକ ସ୍ୱତନ୍ତ୍ର ପ୍ରଶ୍ନ ।

ମୁଁ କହିଲି ଆପଣଙ୍କ ବ୍ୟକ୍ତିଗତ ମତ କଅଣ ? ସେ କହିଲେ ମୋର ବ୍ୟକ୍ତିଗତ ମତର କୌଣସି ମୂଲ୍ୟ ନାହିଁ । ଭାଷାର ଯାହା ନାମ ହେଉନା କାହିଁକି ତାହା ମୋ ପକ୍ଷେ ପ୍ରିୟ । ସେ ଟିକିଏ ରହି ପୁଣି କହିଲେ ନେପାଳୀ ଭାଷାକୁ ଭାରତର ସାହିତ୍ୟ ଏକାଡ଼େମୀ ସ୍ୱୀକୃତି ଦେଇଚି । ଆମର କେତେକ ଲେଖକ ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି । ସେମାନଙ୍କ ମଧ୍ୟରୁ ପୁଷ୍ପଲାଲ ଉପାଧ୍ୟାୟଙ୍କ "ଭାଷା ମଂଜରୀ" (୧୯୮୮) ଏବଂ ଲାଲ ବାହାଦୁର ଛେତ୍ରୀଙ୍କ "ବ୍ରହ୍ମପୁତ୍ରକା ଛେଉଛାଉ" (୧୯୮୭) ପ୍ରଧାନ । କିନ୍ତୁ ଆମ ଭାଷା ସାଂବିଧାନିକ ସ୍ୱୀକୃତି ପାଇନି । ସେ କହିଲେ ଭାରତରେ ଏମିତି ଅନେକ ଭାଷା ଅଛି ଯେଉଁମାନେ ସାହିତ୍ୟ ଏକାଡ଼େମୀର ସ୍ୱୀକୃତି ପାଇଥିଲେ ମଧ୍ୟ ସାମ୍ବିଧାନିକ ସ୍ୱୀକୃତି ପାଇନାହାନ୍ତି । ଯେମିତିକି କଙ୍କଣୀ ଓ ମଣିପୁରୀ ଭାଷା ପ୍ରଭୃତି । ଆହୁ ସବୁଠାରୁ ଆଶ୍ଚର୍ଯ୍ୟର କଥା କଅଣ ଜାଣିଚନ୍ତି ? ସଂସ୍କୃତ ଭାଷା ଭାରତର କୌଣସି ପ୍ରଦେଶର ସରକାରୀ ଭାଷା ନୁହେଁ । ତାକୁ ଭାରତର କୌଣସି ଏକ ପ୍ରାନ୍ତରେ ମାତ୍ର କେତୋଟି ପରିବାର ସେମାନଙ୍କର ମାତୃଭାଷା ରୂପେ ଗ୍ରହଣ କରିଥିଲେ ମଧ୍ୟ ତାକୁ ସମ୍ବିଧାନର ଅଷ୍ଟମ ପରିଚ୍ଛେଦରେ **(8th Schidule)** ସ୍ଥାନ ଦିଆ ଯାଇଚି । କିନ୍ତୁ ନେପାଳୀ ଏବଂ କଂକଣୀ ପ୍ରଭୃତିର ସବୁ ଥାଇ ମଧ୍ୟ ସାମ୍ବିଧାନିକ ସ୍ୱୀକୃତି ନାହିଁ ।

ମୁଁ କହିଲି ସୁବାସ ଘିସିଂ ଜଣେ ଲେଖକ ବୋଲି ଶୁଣିଛି ।

ସେ କହିଲେ ସେ କ୍ଷେତ୍ରରେ ମଧ୍ୟ ସେ ବେଶ୍ ଜଣାଶୁଣା । ସେ ପ୍ରକୃତରେ ଜଣେ ହୃଦୟମାନଙ୍କ । ତାଙ୍କ ଲେଖାରେ ମାନବିକ ସମ୍ବେଦନା ଭରି ରହିଚି ।

ନିକଟରେ ତାଙ୍କର "ସୀମା" ନାମରେ ଏକ ଉଚ୍ଚକୋଟୀର ଉପନ୍ୟାସ ପ୍ରକାଶ ପାଇଚି । ସେ ଉପନ୍ୟାସଟି ତାର ଦାର୍ଶନିକ ଚିନ୍ତାଧାରା ପାଇଁ ନେପାଲୀ ସାହିତ୍ୟରେ ଏକ ନୂତନ ଯୁଗ ସୃଷ୍ଟି କରିବ ।

ଭାରତରେ ଥିବା ଜାତୀୟତାବାଦୀ ନେପାଲୀ କବିମାନଙ୍କ ନାମୋଲ୍ଲେଖ କରି ସେ କହିଲେ ଗଙ୍ଗା ସେରିଙ୍ଗ, ମାୟାଦେବୀ ଛେତ୍ରୀ, ଦଳବାହାଦୁର ଗିରି ଏବଂ ଡକ୍ଟର ପରଶମଣି ପ୍ରଧାନ ପ୍ରଭୃତି ସ୍ୱାଧୀନତା ସଂଗ୍ରାମରେ ପ୍ରତ୍ୟକ୍ଷଭାବେ ଯୋଗ ଦେଇଥିଲେ । ଗୋଟିଏ ଉଦାହରଣ ଦେଇ ସେ କହିଲେ ନେପାଲୀ କବି ଡକ୍ଟର ପରଶମଣି ପ୍ରଧାନ ଲେଖିଛନ୍ତି—

ନେପାଲୀ ଭାରତୀ ହାମ୍ରୋ
ଭାରତୀକା ପିଲ୍ଲା ପରିବାର
ଭାରତୀକୋ ଗାର୍ଯୋ ପୂଜା
ଭାର୍ଯ ଭକ୍ତ ଭଇ ମାର୍ୟୋ

ତାର ଅର୍ଥ ହେଲା—"ଆମେ ନେପାଲୀ ଭାରତର । ଆମକୁ ମାତୃ ପୂଜା କରିବାକୁ ଦିଅ । ଜଣେ ଭାରତର ସେବକ ହିସାବରେ ମରିବାକୁ ଦିଅ ।



# ପୃଥିବୀ ବିଦିତ ବୀରଜାତି

ଯେମିତି ମାୟାଦେବୀ ଛେତ୍ରୀଙ୍କ କଥା ସେ କହିଲେ । ସେ ନେହେରୁ, ମହାତ୍ମାଗାନ୍ଧୀ, ସୁଭାଷ ବୋଷ ଏବଂ ଦଲ ବାହାଦୁର ଗିରଙ୍କ ସହିତ ସ୍ୱାଧୀନତା ଆନ୍ଦୋଳନ ବେଳେ କାମ କରିଥିଲେ । ଶ୍ରୀମତୀ ଛେତ୍ରୀ ମଧ୍ୟ ଦାର୍ଜିଲିଂର ପାର୍ଲାମେଣ୍ଟ ସଭ୍ୟ ଥିଲେ । ସେ ବେଶ କେତେଖଣ୍ଡ ବହି ଲେଖିଛନ୍ତି ।

ଏମାନଙ୍କ ଛଡ଼ା ସିକିମର ମୁଖ୍ୟମନ୍ତ୍ରୀ ନରବାହାଦୁର ଭଣ୍ଡାରୀ ଏବଂ ତାଙ୍କ ପତ୍ନୀ ତଥା ଏବର ପାର୍ଲାମେଣ୍ଟ ସଭ୍ୟ ଶ୍ରୀମତୀ ଦଲ କୁମାରୀ ଭଣ୍ଡାରୀ ମଧ୍ୟ ସାହିତ୍ୟ କ୍ଷେତ୍ରରେ ସୁନାମ ଅର୍ଜନ କରିଛନ୍ତି । ଶ୍ରୀମତୀ ଭଣ୍ଡାରୀଙ୍କ ସଂପାଦନାରେ ପ୍ରକାଶ ପାଉଥିବା ଇଂରାଜୀ ପତ୍ରିକା **Himalay Today** ଏକ ଉଚ୍ଚସ୍ତରର ପତ୍ରିକା ।

ଏତେ ସମସ୍ତ ଯାଏ ଝୁନ୍ନୁ ଏବଂ ମୋ ସ୍ତ୍ରୀ ଦୁହେଁ ଶ୍ରୀମତୀ ଛେତ୍ରୀଙ୍କ ମୁହଁରୁ ତାଙ୍କ ଭାଷଣ ଶୁଣି ଯାଉଥିଲେ । ଶ୍ରୀମତୀ ଚେତ୍ରୀ ଚୁପ ହୋଇଯିବାରୁ ଝୁନୁ କହିଲ—ଆମେ ଓଡ଼ିଆମାନେ ନେପାଲ ସାହିତ୍ୟ ଏତେ ଉଚ୍ଚମାନର ବୋଲି ଜାଣି ନଥିଲୁ । ଭାରତର ଅନ୍ୟାନ୍ୟ ଅଂଶରେ ମଧ୍ୟ ସେମିତି ଜାଣିଥିବେ ବୋଲି ମୋର ବିଶ୍ୱାସ ନାହିଁ । ତେବେ ନେପାଳୀ ଜାତିକୁ ସାଧାରଣଭାବେ ଆମେ ଜାଣିଥିଲୁ ଯେ ଗୋଟିଏ ଯୋଦ୍ଧା ଓ ବୀର ଜାତି ।

ଏଥିରେ କିଛି ସନ୍ଦେହ ନାହିଁ । କେପଟେନ ତମାଙ୍ଗ ଯେ କି ଏତେବେଳଯାଏ ଚେଆରରେ ବସି ଗୋଟିକ ପରେ ଗୋଟିଏ ସିଗାରେଟ୍ ଟାଣୁଥିଲେ । ଚେଆରକୁ ଆଗକୁ ଟାଣି ଆଣି ସେ କହିଲେ ନେପାଳୀ ଜାତି ଯେତିକି ଲଢ଼ୁଆ ସେତିକି ବୀର, ସେତିକି ସାହସୀ ଏବଂ ବିଶ୍ୱାସୀ ମଧ୍ୟ । ଏ ଜାତି ପରପାଇଁ ରକ୍ତ ବେଶୀ ଦିଏ । ଏ ବିଷୟରେ ପୃଥିବୀର ଅନ୍ୟ କୌଣସି ଜାତି ସହିତ ନେପାଳୀଙ୍କୁ ତୁଳନା କରାଯାଇ ପାରିବନି । ସେମାନଙ୍କର ଏହି ଭଲ ଗୁଣ ଯୋଗୁଁ ନେପାଳୀମାନେ କାଲି ଯେ ଭାରତର ଦେଶରକ୍ଷା ବିଭାଗର ଗୋଟିଏ ପ୍ରଧାନ ସ୍ଥାନ ମାଡ଼ି ବସିଛନ୍ତି ତା ନୁହେଁ ଭାରତ ବାହାରେ ଇଂଲଣ୍ଡ, ବ୍ରହ୍ମଦେଶ, ସିଙ୍ଗାପୁର ଏବଂ ଏପରକି ବ୍ରୁନେଇରେ ମଧ୍ୟ ନେପାଳୀମାନେ ଦେଶରକ୍ଷା,

ମିଲିଟାରୀ, ପୋଲିସ ପ୍ରଭୃତିରେ କାମ କରୁଛନ୍ତି । ସେମାନଙ୍କ ଭିତରୁ ବ୍ରିଟେନରେ ଦେଶରକ୍ଷା ଓ ପୋଲିସ ବିଭାଗରେ ପ୍ରାୟ ୧୮୧୫ ହଜାର ଯାଏ ଅଛନ୍ତି । ଅନେକଗୁଡ଼ିଏ କାରଣରୁ ଅବଶ୍ୟ ତାର ସଂଖ୍ୟା ଧୀରେ ଧୀରେ କମି ଆସୁଚି ।

ଇଂଲଣ୍ଡର ରୟାଲ ଆର୍ମିରେ ନେପାଳୀମାନଙ୍କର ଯୋଗଦାନର ଇତିହାସ ସମ୍ପର୍କରେ କ୍ୟାପଟେନ ତମାଙ୍ଗ କହିଲେ ୧୮୧୫ ମସିହାରେ ଅର୍ଥାତ୍ ଇଷ୍ଟ ଇଣ୍ଡିଆ କମ୍ପାନୀ ପ୍ରଥମେ ନେପାଳୀମାନଙ୍କର ବୀର ରକ୍ତର ସନ୍ଧାନ ପାଇଥିଲେ । ୧୮୧୪ରେ କମ୍ପାନୀର ସୈନ୍ୟମାନଙ୍କ ସହିତ ସେତେବେଳର ନେପାଳୀ ରାଜା କାଜୀ ଅମର ସିଂ ଥାପ୍‌ପାଙ୍କର ଯୁଦ୍ଧ ହୋଇଥିଲା । ସେ ଯୁଦ୍ଧରେ ଅମର ସିଂଙ୍କର ପରାଜୟ ହେବାରୁ କମ୍ପାନୀର ସେନାବାହିନୀର କମାଣ୍ଡର ଅମର ସିଂ ଥାପ୍‌ପାଙ୍କ ସହିତ ୧୮୧୫ରେ ଗୋଟିଏ ଚୁକ୍ତି ହୋଇଥିଲା । ସେଇ ଚୁକ୍ତି ଅନୁସାରେ ନେପାଳୀମାନେ ବ୍ରିଟିଶ ଆର୍ମିରେ ଯୋଗଦେବାକୁ ଅନୁମତି ପାଇଲେ । ସେଇ ଦିନଠୁ ଏଇ ଚୁକ୍ତିନାମା ଥରକୁ ଥର ବଢ଼ି ବଢ଼ି ଆସୁଚି ।

ସେ କହିଲେ ଦୁଇଟି ବିଶ୍ୱଯୁଦ୍ଧରେ ନେପାଳୀ ସୈନ୍ୟ ଯେତେ ମୃତ୍ୟୁ ବରଣ କରିଚନ୍ତି ତାର ତୁଳନା ନାହିଁ । ପ୍ରଥମ ମହାଯୁଦ୍ଧରେ ୨୦ ହଜାର ଏବଂ ଦ୍ୱିତୀୟ ମହାଯୁଦ୍ଧରେ ୨୪ ହଜାର ନେପାଳୀ ସୈନ୍ୟ ମୃତ୍ୟୁ ବରଣ କରିଛନ୍ତି । ନେପାଳୀ ଜାତି ପାଇଁ ଏହା ଏକ ଦାରୁଣ ଆଘାତ ହୋଇଥିଲେ ମଧ୍ୟ ଏମାନେ କେବେ ପଛେଇ ଯାଇ ନାହାନ୍ତି ।

ସେ କହିଲେ, ସମସ୍ତ ଯେତିକ ଗର୍ବ ଆସୁଚି ନେପାଳୀ ସୈନ୍ୟଙ୍କର ବୀରତ୍ୱ, ସାହସ ଏବଂ ସ୍ୱାର୍ଥ ତ୍ୟାଗ ଯୋଗୁଁ ପୃଥିବୀରେ ସେମାନଙ୍କର ସେତିକ ଆଦର ବଢ଼ୁଚି । ଏହା ଆମପକ୍ଷେ କମ୍ ଗୌରବର କଥା ନୁହେ । ପୃଥିବୀରେ ଏପରି କୋଉ ଜାତି ଅଛି କହ ଯୋଉ ଜାତି ଯୋଉ ମାଟିରେ ପାଦ ଦେଇଚି ସେ ମାଟିକୁ ନିଜର କରି ନେଇଚି, ଆଦରି ନେଇଚି । ପୃଥିବୀର ସବୁ କୋଣରେ ଆମ ଜାତି ଥିଲାବେଳେ କେବେହେଲେ ସେମାନଙ୍କୁ ନେଇ କୋଉଠି କିଛି ଗୋଳମାଳ ହୋଇଥିବାର ଶୁଣିଛନ୍ତି କି ? ଅନ୍ୟପକ୍ଷରେ, ମୋ ଜାଣିବାରେ ସମଗ୍ର ପୃଥିବୀରେ ନେପାଳୀ କେବଳ ଗୋଟିଏ ଜାତି ଯେ କି ନିଜ ଦେଶ ତଥା ଅନ୍ୟ ଦେଶରେ ମଧ୍ୟ ଦେଶରକ୍ଷାର ଦାୟିତ୍ୱ ନିଏ ।

ମୋ ସ୍ତ୍ରୀ ପଚାରିଲେ ଇଂଲଣ୍ଡରେ କଣ ଏବେ ମଧ୍ୟ ରୟାଲ୍ ଆର୍ମିରେ ନେପାଳୀମାନେ ଅଛନ୍ତି ?

ସେ କହିଲେ, ଅଛନ୍ତି ମାନେ ? ଏବେ ମଧ୍ୟ ନେପାଳ ସୀମାରେ ବ୍ରିଟିଶ ସରକାରଙ୍କ ରିକ୍ରୁଟିଂ ସେଣ୍ଟରମାନ ଅଛି । ସେମାନଙ୍କୁ ରିକ୍ରୁଟ କରାଯାଇ ଉଡ଼ାଜାହାଜରେ ହଂକଂ ପଠେଇ ଦିଆଯାଏ । ଏହି ରିକ୍ରୁଟିଂ ସେଣ୍ଟରମାନଙ୍କରେ ସବୁ ପ୍ରକାର ସୁବିଧା ଅଛି । ବର୍ଷଯାକ ସେଠି ରିକ୍ରୁଟମେଣ୍ଟ ଚାଲିଥାଏ । ଏଥିପାଇଁ ସେଠି ବ୍ରିଟିଶ ସରକାର ତାଙ୍କ ନିଜ ଖର୍ଚ୍ଚରେ ରାସ୍ତାଘାଟ ଘରବାଡ଼ି ଇତ୍ୟାଦି ତିଆରି କରେଇଛନ୍ତି । ସେ କହିଲେ ମୋର ଯେତେଦୂର ମନେହୁଏ ଏବେ କେବଳ ଇଂଲଣ୍ଡରେ ରୟାଲ ଆର୍ମିରେ ଦଶ ହଜାର ନେପାଳୀ ସୈନ୍ୟ ଅଛନ୍ତି ଏବଂ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ନିକଟରେ ବ୍ରିଟିଶ ଆର୍ମିରେ ୭ମ ଗୁର୍ଖା ବାଟାଲିଅନକୁ ଫକଲାଣ୍ଡ ଦ୍ୱୀପରେ ଆର୍ଜେଣ୍ଟିନା ସୈନ୍ୟ ବିରୁଦ୍ଧରେ ମୁତୟନ କରାଯାଇ ଥିଲା । ଏହି ଯୁଦ୍ଧରେ ସେମାନେ ଜୟଲାଭ କରି ଷ୍ଟାନଲେ ଦ୍ୱୀପକୁ ପୁନର୍ଦଖଲ କରିଛନ୍ତି ।



# ଓ ସୁରେନ୍ଦ୍ର ଦ୍ୱିବେଦୀ

ଆସାମରେ ମୋର ରହଣିଟାକୁ ସବୁବେଳେ ମୁଁ ଗୋଟାଏ ଲୁକକାୟିତ ଆଶୀର୍ବାଦ ବୋଲି ଗ୍ରହଣ କରି ଆସିଛି । ସେ ରହଣି ଭିତରେ ମୁଁ ଅନେକ କଥା ଜାଣିବାର ସୁଯୋଗ ପାଇଲି ; ଏତେ କଥା ଯେ ଗନ୍ତାଘର ଭିତରେ ଥିଲି ତାହା ମୋର କଳ୍ପନାର ବାହାରେ ଥିଲା ।

ଆସାମରେ ଓଡ଼ିଆଙ୍କ କଥା ମୁଁ ଆଗରୁ ମୋର 'ଉପତ୍ୟକାର ଉପକଥା' ପୁସ୍ତକରେ ଲେଖି ସାରିଛି । ତେଣୁ ତାର ଆଉ ପୁନରାବୃତ୍ତି ମୁଁ ଏଠି କରୁନାହିଁ । କିନ୍ତୁ ଗୋଟିଏ ଘଟଣା ଏଠି ନ ଲେଖି ମୁଁ ରହି ପାରୁନି ।

ମୋର ସୌଭାଗ୍ୟ ଯେ ମୁଁ ଯେତେବେଳେ ଆସାମରେ ଥିଲି ସେତେବେଳେ ଓଡ଼ିଶାର ତିନିଜଣ ବରପୁତ୍ର ଉତ୍ତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ରାଜ୍ୟପାଳ ଭାବେ ଅବସ୍ଥାପିତ ହୋଇଥିଲେ । ସେମାନେ ହେଲେ ଶ୍ରୀ ଲୋକନାଥ ମିଶ୍ର ଆସାମରେ, ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ମଣିପୁରରେ ଏବଂ ସୁରେନ୍ଦ୍ର ଦ୍ୱିବେଦୀ ଅରୁଣାଚଳରେ ଥିଲେ । ଓଡ଼ିଶାର ଭାଗ୍ୟରେ ଏକକାଳୀନ ତିନିଜଣ ଓଡ଼ିଆ ରାଜ୍ୟପାଳ ପଦରେ ଅଧିଷ୍ଠିତ ହେବା ପ୍ରଥମ ଓ ଶେଷ ବୋଧେ ।

ସେଇ ଗର୍ବରେ ମୁଁ ଆସାମରେ ଫାଟି ପଡ଼ୁଥାଏ । ସତ କଥା କହିବାକୁ ଗଲେ କେତେକ ପରିମାଣରେ ମୋର ସମ୍ମାନ ମଧ୍ୟ ମୋର ବନ୍ଧୁମାନଙ୍କ ଗହଣରେ ବଢ଼ି ଯାଇଥାଏ ।

ସବୁ ରାଜ୍ୟ ତ ବୁଲି ଦେଖିବା ମୋର ପ୍ରଥମରୁ ଇଚ୍ଛାଥିଲା । ମୋ ରାଜ୍ୟର ଜନନେତାଟିଏ ସେଠି ଗଭର୍ଣ୍ଣର ଥିଲାବେଳେ ମୋର ସେଠାକୁ ଭ୍ରମଣ ଉଦ୍ଦେଶ୍ୟରେ ଯିବାର ସୁଯୋଗ ମାଇବାକୁ ମୁଁ ଆହୁରି ସମ୍ମାନଜନକ କଥା ହିସାବରେ ନେଇଥିଲି । ସେ ସୁଯୋଗକୁ ମୁଁ ହାତଛଡ଼ା କରିବାକୁ ପ୍ରସ୍ତୁତ ନ ଥିଲି ।

ଏ ତିନିଜଣଙ୍କ ସହିତ ମୋର ସମ୍ପର୍କ କଥା ଏଠି ସାମାନ୍ୟ ଉଲ୍ଲେଖ କରିବା ଉଚିତ ମନେ କରୁଛି ।

ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ତ ମୁଁ ପିଲାକାଳରୁ ଜାଣିଥିଲି । ଯୋଉମାନେ ଓଡ଼ିଶାର ସମାଜବାଦୀ ବା ପ୍ରଜାସମାଜବାଦୀ ଆନ୍ଦୋଳନ କଥା ଜାଣନ୍ତି ସେମାନେ ଶ୍ରୀ ଦ୍ୱିବେଦୀଙ୍କ ନାଁ ପ୍ରଥମେ ଉଚ୍ଚାରଣ କରନ୍ତି । ମୁଁ ସେହିପରି ଗୋଟିଏ ପରିବାରରୁ ଆସିଥିବାରୁ ତାଙ୍କୁ ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳୁ ଦେଖିବାର ଏବଂ ତାଙ୍କ ଭାଷଣ ଶୁଣିବାର ସୁଯୋଗ ପାଇଥିଲି । ପରେ ପରେ ତାଙ୍କୁ ଯେତିକି ଜାଣିଛି ସେତିକି

ଅଧିକ ତାଙ୍କ ଆଡ଼କୁ ଆକୃଷ୍ଟ ହୋଇଯାଇଛି । ତେଣୁ ସେଇ ପ୍ରଥମ ଦିନରୁ, ସୁବର୍ଣ୍ଣରେଖା ନଦୀକୂଳ ଗାଁ ପଥରଆରେ ତାଙ୍କ ଭାଷଣ ଶୁଣିବା ଦିନଠାରୁ ମୋ ମନରେ ସେ ଏକ ନିରାକାର ପରମବ୍ରହ୍ମ ରୂପ ମୋ ଅଜାଣତରେ ଧାରଣ କରି ସାରିଥିଲେ ।

ଚନ୍ଦ୍ରାମଣି ପାଣିଗ୍ରାହୀଙ୍କୁ ମୁଁ ଜାଣିଲି ଅନେକ ପରେ-ପ୍ରଜାତନ୍ତ୍ର ମାଧ୍ୟମରେ । ବୋଧେ ୧୯୫୭ର କଥା । ସେତେବେଳେ ପ୍ରଜାତନ୍ତ୍ର ପ୍ରଚାର ସମିତି ଗୋଟିଏ ପ୍ରତିଯୋଗିତାର ସର୍ବୋତ୍କୃଷ୍ଟ କେତୋଟି ଗଳ୍ପକୁ ଗୋଟିଏ ସଂକଳନ ଆକାରରେ ପ୍ରକାଶ କରିଥିଲା । ନାଁ ଥିଲା ‘ପଞ୍ଚମୀ’ । ତାର ପ୍ରଥମ ଗଳ୍ପ ‘ବଉଳା’ ଏବେ ବି ମୋର ମନେଅଛି । ସେ ବହିର ଉପୋଦ୍‌ଘାତ ଲେଖିଥିଲେ ଚନ୍ଦ୍ରାମଣି ପାଣିଗ୍ରାହୀ । ଅନୁପ୍ରାଣିତ ଜଳଜଳ ଲେଖା । ସେ ବହିଟିକୁ ଅନେକ ଦିନ ପର୍ଯ୍ୟନ୍ତ ସାଇତି ରଖିଥିଲି ।

୧୯୮୭ର କଥା । ମୁଁ ସେତେବେଳେ ପାରାଦ୍ୱୀପ ପୋର୍ଟରୁ ଫିକ୍‌ସଡ଼ି ଡାଇଭିରେ ଥାଏ । ଅସ୍ଥାୟୀ ଭାବରେ । ଶିଳ୍ପ ନିରାପତ୍ତା ବାହିନୀର ଗୋଟାଏ ଟ୍ରେନିଂ ସେଣ୍ଟର ସ୍ଥାପିତ ହେବାର ସ୍ଥିର ହେଲା । ଭିତ୍ତି ପ୍ରସ୍ତର ସ୍ଥାପନ କରିବାକୁ ଆସିଲେ ତତ୍କାଳୀନ ସର୍ବେଇ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପାଣିଗ୍ରାହୀ । ଦୁର୍ଗାମାଧବ ମିଶ୍ର ଥିଲେ ସେତେବେଳେ ଆମ ଡି. ଜି. । ସେ ମୋତେ ଶ୍ରୀ ପାଣିଗ୍ରାହୀଙ୍କ ସହିତ ପରିଚୟ କରେଇ ଦେଲେ । ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ତାଙ୍କର ‘ପଞ୍ଚମୀ’ ଓ ତାର ମୁଖବନ୍ଧ କଥା ସ୍ମରଣ କରାଇ ଦେଲି । ସେ ଖାଇବା ବନ୍ଦକରି ମୋତେ କହିଲେ ମୋତେ ସେ ବହିଟିକୁ ଦିଅନ୍ତୁ । ମୁଁ ତାକୁ ଆଉ ଥରେ ପ୍ରକାଶ କରିବି । କାଳବିଳମ୍ବ ନ କରି ମୁଁ ତାଙ୍କୁ ବହିଟି ଆଣି ଦେଇଥିଲି । ପ୍ରକାଶନ ପରେ ସେ ଅବଶ୍ୟ ମୋତେ ବହିଟି ଫେରେଇ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ବର୍ଷବର୍ଷ ପରେ ମୁଁ ଆସାମରେ ଥିଲାବେଳେ ସେ ଆସିଲେ ମଣିପୁରର ରାଜ୍ୟପାଳ ହୋଇ । ମୁଁ ଖୁସି ହୋଇଗଲି ।

ଏବେ ଲୋକନାଥ ମିଶ୍ରଙ୍କ କଥା । ଆସାମର ସେତେବେଳେ ଚରମ ଦୁର୍ଦ୍ଦିନର ସମୟ । ଗୋଟିଏ ଦିଗରେ ଉଲ୍‌ଫାର ଉତ୍ପାତ ଓ ଅନ୍ୟ ଦିଗରେ ବୋଡ଼ୋ ଆନ୍ଦୋଳନ ଦୁହେଁ ମିଶି ଖାଲି ଆସାମ କାହିଁକି ସମଗ୍ର ଉତ୍ତର ପୂର୍ବାଞ୍ଚଳକୁ ଦୋହଲାଇ ଦେଉ ଥାଆନ୍ତି । ଆସାମ ଗଣପରିଷଦର ଶାସନକୁ କେନ୍ଦ୍ର ସରକାର ବରଖାସ୍ତ କରି ରାଷ୍ଟ୍ରପତି ଶାସନ ଜାରି କଲେ । ଠିକ୍ ସେତିକବେଳେ ଲୋକନାଥ ମିଶ୍ରଙ୍କ ଆବିର୍ଭାବ ।

ମୁଁ ଚମକି ପଡ଼ିଲି । କିଏ ଏଇ ଭଦ୍ରଲୋକ ? ସେଇ ପୁଣ୍ୟଶ୍ଳୋକ ଗୋଦାବରୀଶ ମିଶ୍ରଙ୍କ ପୁଅ ନା ଅଉ କିଏ ? ତାର କାରଣ ହେଲା ସେତେବେଳାକୁ

ଅନେକ ଦିନ ହେଲା ଲୋକନାଥ ମିଶ୍ର ରାଜନୈତିକ ସନ୍ନ୍ୟାସ ଗ୍ରହଣ କରିଥାଆନ୍ତି । ତେଣୁ ହଠାତ୍ ମନେ ନ ପଡ଼ିବା ସ୍ୱାଭାବିକ । ଏମିତିତ ସାଧାରଣ ଭାବେ ୨୫ ଦୀର୍ଘ ଦିନର ରାଜନୈତିକ ଜୀବନ-ଭିତରେ ସେମିତି କିଛି ଲୋକଲୋଚନକୁ ଆସିପାରି ନ ଥିଲେ । ସେଇଥିପାଇଁ ବୋଧେ ନାଁଟା ଦେଖି ଚମକି ପଡ଼ିଲି । ତଥାପି ଭାବିଲି, ଆଃ, ଓଡ଼ିଆ ତ । ମନେ ମନେ ଗୋଟାଏ ଅହେତୁକ ଗର୍ବ ମୋତେ ଫୁଲେଇ ପକେଇଲା ।

ମୁଁ ଏକଦା ଏ ତିନିଜଣଙ୍କ ପାଖକୁ ସେମାନଙ୍କ ନାଁରେ ଖାଣ୍ଟି ଓଡ଼ିଆରେ ତିନୋଟି ବ୍ୟକ୍ତିଗତ ଚିଠି ଲେଖିଲି । ଲେଖିଲି, ମୁଁ ଏଇ ଆସାମରେ ଅଛି ଏବଂ ଆପଣଙ୍କ ରାଜ୍ୟ ଥରେ ବୁଲି ଦେଖି କିଛି ଲେଖା ପାଇଁ ଖାଦ୍ୟ ସଂଗ୍ରହ କରିବି । ମୋତେ ଅନୁମତି ଦିଅନ୍ତୁ ଏବଂ ତା ସହିତ ଥରେ ସାକ୍ଷାତର ସୁଯୋଗ ମଧ୍ୟ ଦିଅନ୍ତୁ ।

ଶ୍ରୀ ଦ୍ୱିବେଦୀଙ୍କଠାରୁ ଉତ୍ତର ଆସିଲା । ମାତ୍ର ସାତ ଦିନ ଭିତରେ । ନିଜ ହାତରେ ଲେଖିଛନ୍ତି । ଲଫାପାରେ ଠିକଣା ମଧ୍ୟ ନିଜ ହାତରେ । ଲେଖିଛନ୍ତି ଅନେକ କଥା । ତା' ଭିତରୁ ଗୋଟିଏ ଧାଡ଼ି ଉଲ୍ଲେଖ କରୁଛି । ମୁଁ ଆପଣଙ୍କୁ ଜାଣେ । ଆପଣଙ୍କ ସବୁ ଲେଖା ପଢ଼ିଛି ବୋଲି କହି ପାରିବିନି । ତେବେ କେତେକ ନିଶ୍ଚୟ ପଢ଼ିଛି ।... ଆପଣ ଯେତେବେଳେ ଇଚ୍ଛା ଆସନ୍ତୁ । ମୁଁ ମୋର ସେକ୍ରେଟେରୀ ଗୋରାକୁ (ଗୌରଚନ୍ଦ୍ର ମିଶ୍ର)କୁ କହି ଦେଇଛି । ଆପଣ ମୋର ଅତିଥି ହୋଇ ରହିବେ । ମୁଁ ଥାଏ କି ନ ଥାଏ ଆପଣଙ୍କର କୌଣସି ଅସୁବିଧା ହେବନାହିଁ । ତେବେ ଆସିବା ଆଗରୁ ଏଇ ନମ୍ବରରେ ଫୋନ କରଦେବେ ।''

ସେ ଚିଠିଟି ଏବେବି ମୋ ପାଖରେ ଏକ ମହାର୍ଘ ସମ୍ପତ୍ତି ହୋଇ ରହିଛି । ମୁଁ ସେଦିନ ବିମୋହିତ ହୋଇ ପଡ଼ିଥିଲି ।

ଶ୍ରୀ ଲୋକନାଥ ମିଶ୍ରଙ୍କଠାରୁ ଉତ୍ତର ଆସିଲା ପ୍ରାୟ ଦୁଇ ମାସ ପରେ । ସେ ଲେଖିନାହାନ୍ତି, ତାଙ୍କ ପ୍ରାଇଭେଟ ସେକ୍ରେଟେରୀ । ଇଂରାଜୀରେ ଟାଇପ କରାଯାଇଛି । ସାର ମର୍ମ ହେଲା ଆପଣ ଆସନ୍ତୁ । କିନ୍ତୁ ଆସିବା ପୂର୍ବରୁ ଫୋନରେ ଆଉ ଥରେ କନଫର୍ମ କରିବେ ।

ତଥାପି ଖୁସି ହେଲି । ଯା'ହେଉ ଅଫିସିଆଲ ତ । ଆସାମର ଗଭର୍ଣ୍ଣର ନିଶ୍ଚିତ ଭାବେ ଜଣେ ବ୍ୟସ୍ତ ଲୋକ । ବିଶେଷକରି ମନ୍ତ୍ରିମଣ୍ଡଳ ନ ଥିଲେ ଗଭର୍ଣ୍ଣର ଅହୁରି ବ୍ୟସ୍ତ ।

କିନ୍ତୁ ଶ୍ରୀ ପାଣିଗ୍ରାହୀଙ୍କଠାରୁ ମୁଁ ଦୁଇଥର ଚିଠି ଲେଖି ମଧ୍ୟ ଗୋଟିଏ ବୋଲି ଉତ୍ତର ପାଇ ପାରିଲିନି । ଗଭର୍ଣ୍ଣରଙ୍କଠାକୁ କିମ୍ବା ଗଭର୍ଣ୍ଣରଙ୍କଠାରୁ ଆସୁଥିବା ଚିଠିକୁ ତାଙ୍କ ବିଭାଗ ଏପାଖ ସେପାଖ କରୁଥିବେ ବୋଲି ମୁଁ ବିଶ୍ୱାସ କରୁନାହିଁ । ମୋର ଦୁର୍ଭାଗ୍ୟ ।

—*—

# ଓଡ଼ିଶା ବାହାରେ ଉତ୍କଳ ଦିବସ

କଥାଟା ବେଖାପ ଲାଗିପାରେ । କେହି କେହି ଭାବି ପାରନ୍ତି ଓଡ଼ିଶା ଭିତରେ ଯେତେବେଳେ ଉତ୍କଳ ଦିବସ ପାଳନ କେବଳ ପୁଲିସ ପେରେଡ଼ରେ ସୀମିତ ହେବାକୁ ବସିଲାଣି; କା ଭାଁ ଅପନ୍ତୁ ଗଣ୍ଡିତ ମଧୁସୂଦନ ବା ଗୋପବନ୍ଧୁଙ୍କ ମୂର୍ତ୍ତି ଉପରେ ମୁଖ୍ୟତଃ ପ୍ରଚାର ଉଦ୍ଦେଶ୍ୟରେ ଟି.ଭି କ୍ୟାମେରା ସାମନାରେ ଏବଂ ସାମ୍ବାଦିକଙ୍କ ଗହଣରେ ଆସି ନେତାମାନେ ଫୁଲମାଳଟିଏ ପକେଇ ଯଥାସମ୍ଭବ ସଂକ୍ଷିପ୍ତ ଭାଷଣରେ ସୀମାବଦ୍ଧ କରି ଦେଲେଣି, ସେତେବେଳେ ଓଡ଼ିଶା ବାହାରେ ପୁଣି କିଏ ଉତ୍କଳ ଦିବସ ପାଳନ କରୁଚି ?

ଓଡ଼ିଶା ବାହାରେ ଉତ୍କଳ ଦିବସ ବେଶ ପାରମ୍ପରିକ ଭାବରେ ପାଳିତ ହେଉଚି । ଦିନକୁ ଦିନ ଏଇ ପ୍ରବାସୀ ଓଡ଼ିଆଙ୍କ ମନରେ ନିଜ ମାତୃଭାଷା ଓ ମାତୃଭୂମି ପ୍ରତି ଅଧିକ ସ୍ନେହ ମମତା ଜାଗ୍ରତ ହେଉଥିବାର ଦେଖାଯାଉଚି । ସେମାନେ ତାଙ୍କ କର୍ମକ୍ଷେତ୍ରରେ ଦିନକୁ ଥରେ ମଧ୍ୟ ମାତୃଭାଷା ବ୍ୟବହାର କରିବାର ସୁଯୋଗ ପାଉ ନ ଥିଲେ ମଧ୍ୟ ନିଜର ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରତି ସେମାନଙ୍କର ସ୍ନେହ ଆଶାତୀତ ଭାବେ ବୃଦ୍ଧି ପାଉଚି । ହୁଏତ ଦିନ ଆସିବ ଯେତେବେଳେ ଓଡ଼ିଶା ଭିତରେ ଉତ୍କଳ ଦିବସ ପାଳନ କେବଳ ଗୋଟାଏ ପରମ୍ପରା ବା ପ୍ରବାଦରେ ପରିଣତ ହେଇଯିବ । କିନ୍ତୁ ସେତେବେଳେ ସେଇ ପ୍ରବାସୀ ଓଡ଼ିଆମାନେ ହିଁ କେବଳ ସେ ସଂସ୍କୃତିକୁ ଯଥାଯଥ ଭାବରେ ପାଳନ କରି, ନିଜର ସାଂସ୍କୃତିକ ପରିଚୟ ବଜାୟ ରଖିବେ ।

ଓଡ଼ିଶା ବାହାରେ ଅନେକ ଜାଗାରେ ଏବେ ଖୁବ୍ ଜାକଜମକରେ ଉତ୍କଳ ଦିବସ ପାଳିତ ହେଉଚି । ତା' ଭିତରୁ ମାନ୍ଦ୍ରାଜର ନା ବୋଧେ ପ୍ରଥମରେ ରହିବ । ମାନ୍ଦ୍ରାଜର ଏସୋସିଏସନ ଗ୍ଯା ଭିତରେ ଅନେକ ଆଖିଦୁଶିଆ କାମ କଲେଣି ।

୧୯୮୬ରେ ମୁଁ ମାନ୍ଦ୍ରାଜ ପୋର୍ଟରେ ଅବସ୍ଥାପିତ ହୋଇଥିଲାବେଳେ ମୁଁ ଡକ୍ଟର କାଳିପ୍ରସାଦ ମିଶ୍ର, ଡକ୍ଟର (ପ୍ରଫେସର) ସୁରେନ୍ଦ୍ର ନାଥ ମାହିଁ ପ୍ରଭୃତି ମିଶି ଆରମ୍ଭ କଲୁ ଏସୋସିଏସନ । ତା' ପୂର୍ବରୁ ଦୁଇ ତିନିଥର ଏ ଉତ୍ସବାନୁଷ୍ଠାନ

ସେଠି ଆୟୋଜିତ ହେଉଥିଲେ ମଧ୍ୟ ବିଧିବଦ୍ଧଭାବେ ଏସୋସିଏସନ ଗଠିତ ହୋଇପାରି ନଥିଲା । ସେଥର ଆମର ପ୍ରଥମ ମୁଖ୍ୟ ଅତିଥି ଥିଲେ ବରିଷ୍ଠ ସାହିତ୍ୟିକ ମନୋଜ ଦାସ । ତା'ପରେ ଆମେ ଆଉ କେବେ ପଛକୁ ଫେରି ଚାହିଁନୁ । ଆଗକୁ ମାଡ଼ି ଚାଲିନୁଁ । ୧୯୮୪ରେ ମୁଁ ସେଠୁ ବିଦାୟ ନେଇ ଆସିଲାବେଳେ ପ୍ରାୟ ୨୪ ହଜାର ଟଙ୍କାର ପାଣ୍ଠିଟିଏ ଏସୋସିଏସନର ସଭାପତି ଡକ୍ଟର କବି ମିଶ୍ରଙ୍କ ହାତରେ ଧରାଇଦେଇ ଆସିଲି । ମୁଁ ଥିଲି ତାର ସାଧାରଣ ସମ୍ପାଦକ । ତା'ପରେ ସେ ଅନୁଷ୍ଠାନ ପଛରେ କି ଐଶ୍ୱରିକ ଆଶୀର୍ବାଦ ଥିଲା କେଜାଣି ହୁ ହୁ ଆଗକୁ ମାଡ଼ି ଯାଉଛି । ଗତବର୍ଷ (୧୯୯୫) ଗଣେଶ ପୂଜାବେଳେ ମୁଁ ପୁଣି ଥରେ ସେଠାକୁ ଯାଇଥିଲି । ଦେଖିଲି ସମୁଦ୍ର କୂଳରେ ଏକ ଏକର ଜାଗାରେ ବିରାଟ ଜଗନ୍ନାଥ ମନ୍ଦିର ନିର୍ମାଣ ଚାଲିଛି । ମୋ ଆଖି ଝାପସି ହୋଇଗଲା । ଡକ୍ଟର ମିଶ୍ର ମୋତେ ସବୁ ଜାଗା ବୁଲେଇ ଦେଖେଇ ଆଣିଲେ ଏବଂ ମନ୍ଦିର ନିର୍ମାଣର ଯୋଜନା ସମ୍ପର୍କରେ ସୂଚନା ଦେଲେ । ଏବେ ସେମାନେ ଯେଉଁପରି ଭାବରେ ଉତ୍କଳ ଦିବସ ପାଳନ କରୁଛନ୍ତି ନଦେଖିଲେ ବିଶ୍ୱାସ କରି ହେବନି ।

ମୁଁ ଦିଲ୍ଲୀ ଏବଂ ପାଟନାରେ ମଧ୍ୟ ଥିଲି । ସେଠି ଉତ୍କଳ ଏସୋସିଏସନ ନାଁକୁ ମାତ୍ର କହୁଛି । ବିଧିବଦ୍ଧଭାବେ ଉତ୍କଳ ଦିବସ ପାଳିତ ହୋଇପାରେନା । ଏବେ ଯଦି ଅବସ୍ଥାର ପରିବର୍ତ୍ତନ ହୋଇଥିବ କହିପାରିବିନି ।

ଶ୍ରୀ ଦ୍ୱିବେଦୀ ଯେତେବେଳେ ଅରୁଣାଚଳ ଆସିଲେ ସେତେବେଳେ ସେଠି ବିଧିବଦ୍ଧଭାବେ ଉତ୍କଳ ଦିବସ ପାଳିତ ହେଲା । ଓଡ଼ିଶାରୁ ନିମନ୍ତ୍ରିତ ଅତିଥି ହିସାବରେ ବହୁ କଳାକାର, ଶିଳ୍ପୀ, ଲେଖକ, କବି ସେଠାକୁ ଗଲେ । ଓଡ଼ିଶା ସହିତ ପାର୍ବତ୍ୟ ଉପତ୍ୟକାରେ ଥିବା ଗୋଟାଏ ବିରାଟ ଜନସଭା ସହିତ ନୂତନ ସାଂସ୍କୃତିକ ମିଳନର ବନ୍ଧନଟିଏ ଆପେ ଆପେ ବନ୍ଧା ହୋଇଗଲା । ଆମେ ଅରୁଣାଚଳକୁ ଏବଂ ଅରୁଣାଚଳ ଆମକୁ ଜାଣିଲା । ଦୁଇଟି ରାଜ୍ୟ କେତେ ଦୂରରେ ଥାଇ ମଧ୍ୟ କେତେ ପାଖେଇ ଆସିଲେ । ଅତି ଆପଣାର ହୋଇଗଲେ ।

କିନ୍ତୁ ଆସାମରେ ତାହା ଭିନ୍ନ ମୋଡ଼ ନେଲା । ଲୋକନାଥ ମିଶ୍ର ସେଠାକୁ ଆସିଲା ପରେ ଅନେକ ଦିନର ପୁରାତନ ଉତ୍କଳ ଏସୋସିଏସନ ଯେଉଁମାନେ ବରାବର ଉତ୍କଳ ଦିବସ ପାଳନ କରି ଆସୁଥିଲେ ସେମାନେ ସେ ଦିନକୁ 'ଆସାମ-ଉତ୍କଳ ସାଂସ୍କୃତିକ ସଭା' ହିସାବରେ ପାଳନ କଲେ । ଏସୋସିଏସନର ସଭାପତି ଏ: କେ: ମହାଥାଲଙ୍କୁ (ମୟୂରଭଞ୍ଜ ଜିଲ୍ଲାରେ ସେମାନେ ମହାଥାଲ ଭାବରେ ସୁପରିଚିତ) ମୁଁ ଯେତେବେଳେ ତାର କାରଣ ସମ୍ପର୍କରେ

ପଚାରିଲି ସେ ଖାଲି ଟିକିଏ ହସିଦେଲେ । ତେବେ ଶ୍ରୀ ମିଶ୍ର ଯେ ସଭାରେ ଉଭୟ ଓଡ଼ିଆ ଓ ଇଂରାଜୀରେ ଭାଷଣ ଦେଇଥିଲେ । ମୁଖ୍ୟମନ୍ତ୍ରୀ ହିତେଶ୍ୱର ସାଇକିଆ ମଧ୍ୟ ଯୋଗ ଦେଇଥିଲେ ମୁଖ୍ୟ ଅତିଥି ହିସାବରେ ।

ଅସମୀୟାମାନେ ଓଡ଼ିଆଙ୍କୁ ଖୁବ୍ ଭଲ ପାଆନ୍ତି । ସେମାନଙ୍କୁ ଏତେ ଭଲ ପାଆନ୍ତି ଯେ ଆସାମ ସାହିତ୍ୟ ସଭାର ବାର୍ଷିକ ଅଧିବେଶନରେ ଓଡ଼ିଶାର ଦୁଇଜଣ ବରପୁତ୍ର ଡକ୍ଟର ହରେକୃଷ୍ଣ ମହତାବ ଏବଂ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ ସେମାନେ ଓଡ଼ିଆରେ ଭାଷଣ ଦେବାକୁ ଅନୁରୋଧ କରିଥିଲେ । ତାର କାରଣ ସେମାନେ ଓଡ଼ିଆ ବୁଝନ୍ତି । ତେଣୁ ଯେ ଅବସ୍ଥାରେ ସେଠି ଉତ୍କଳ ଦିବସ ପାଳନବେଳେ 'ଉତ୍କଳ ଦିବସ'ର ବ୍ୟାନରଟିଏ (ଆସାମ-ଓଡ଼ିଶା ସାଂସ୍କୃତିକ ସଂସ୍ଥା ବଦଳରେ) ଯଦି ଲଗାଯାଇ ଥାଆନ୍ତା ତେବେ ସେମାନଙ୍କର କାହାର କିଛି କହିବାର ନଥିଲା । ସେଦିନ ରାତିରେ ଗୌହାଟିରୁ ବଙ୍ଗାଇଗାଓଁ ଫେରିଲାବେଳେ ବାଟରେ ମୋତେ ମୋର ଅସମୀୟା ବନ୍ଧୁମାନେ ଉତ୍କଳ ଦିବସର ବ୍ୟାନର କାହିଁକି ଲଗାଯାଇ ନଥିଲା ବୋଲି ପଚାରିଥିଲେ । କି ଉତ୍ତର ମୁଁ ତାଙ୍କୁ ଦେଇଥାଆନ୍ତି ଯେ ?

ମଣିପୁରରେ ଉତ୍କଳ ଦିବସ ପାଳିତ ହୁଏ କି ନା ମୁଁ ଜାଣେନା । କିନ୍ତୁ ଏ କଥା ନିଶ୍ଚୟ ଜାଣେ ଯେ ସେଠି ଅନେକ ଓଡ଼ିଆ ଅଛନ୍ତି ଏବଂ ସେମାନେ ସବୁ ବହୁ ବଡ଼ ବଡ଼ ପଦରେ ଅଧିଷ୍ଠିତ ଅଛନ୍ତି ।

ସୁଖର କଥା ଆଜିକାଲି ଭାରତ ବାହାରେ ଥିବା ଓଡ଼ିଆମାନେ ମଧ୍ୟ ଉତ୍କଳ ଦିବସ ପାଳନ କଲେଣି । ଆମେରିକାର ବହୁ ଜାଗାରେ ଉତ୍କଳ ଦିବସ ପାଳିତ ହୁଏ ବୋଲି ଏବେ ଖବର ମିଳୁଛି । ଏସବୁ ଶୁଭ ଲକ୍ଷଣ ।



# ଇଟାନଗର ଯାତ୍ରା

ଶ୍ରୀ ଦ୍ୱିବେଦୀଙ୍କ ଠାରୁ ଚିଠି ପାଇଲା ପରେ ମୁଁ ଖୁବ୍ ଉତ୍ସାହିତ ହୋଇ ପଡ଼ିଲି । ଅରୁଣାଚଳ ପରି ହିମାଳୟର କୋଳ ଭିତରେ ପଶି ଯାଇଥିବା ରାଜ୍ୟକୁ ଦେଖିବାର ସ୍ୱପ୍ନ ଯେ ମୋର ସାକାର ହେବାକୁ ଯାଉଛି ଏହା ଜାଣିଲା ପରେ ମୋ ଭିତରେ ଗୋଟାଏ ଅନନୁଭୂତ ଶିହରଣ ସୃଷ୍ଟି ହେଲା । ବିଶେଷ କରି ମୁଁ ଯେ ଜଣେ ଗଭର୍ଣ୍ଣରଙ୍କ ଅତିଥି ହେବାକୁ ଯାଉଛି ଏ କଥା ଉଲ୍ଲସିତ କରି ଦେଉଥିଲା ।

କିନ୍ତୁ ଯିବି କେମିତି ? ବଙ୍ଗାଇଗାଓଁରୁ ମୁକ୍ତି ମିଳିଲେ ତ । ଏହା ଏପରି ଏକ ସ୍ଥାନ ଏବଂ ଏ ସ୍ଥାନ ସହିତ ମୁଁ ଏପରି ଭାବରେ ଜଡ଼ିତ ହୋଇ ପଡ଼ିଛି ଯେ ଏଠୁ ଗୋଟାଏ ଦିନ ମୁକ୍ତି ପାଇବା ସହଜ କଥା ନୁହେଁ ।

କିନ୍ତୁ ସରକାରୀ କାର୍ଯ୍ୟରେ ଯେଥର ମୋତେ ଡିବ୍ରୁଗଡ଼ ଯିବାକୁ ପଡ଼ିବାରୁ ମୋତେ ଗୋଟାଏ ରାସ୍ତା ମିଳିଗଲା । ମୁଁ ଦେଖିଲି ଡିବ୍ରୁଗଡ଼ ଯିବାକୁ ହେଲେ ମୋତେ ଗୌହାଟିରୁ ଉଡ଼ାଜାହାଜରେ ଯିବାକୁ ହେବ । ତେଣୁ ସେଠୁ ଫେରିଲା ବେଳେ ଗୌହାଟିରୁ ବସ୍‌ରେ ଅରୁଣାଚଳ ଯାଇ ହେବ । ଗୋଟାଏ ରାତିର ଯାତ୍ରା । ତା ଛଡ଼ା ଅରୁଣାଚଳକୁ ପ୍ଲେନ୍ ସର୍ଭିସ ନାହିଁ । ତେଣୁ ବସ୍ ହିଁ ଏକମାତ୍ର ଅବଲମ୍ବନ ।

ପଚିଶବର୍ଷର ସ୍ୱାଧୀନତା ପ୍ରାପ୍ତିର ଗର୍ବ ଗୌରବରେ ଫାଟି ପଡ଼ୁଥିବା ଭାରତର ଅରୁଣାଚଳ ଗୋଟିଏ କ୍ଷୁଦ୍ର ରାଜ୍ୟ । ସେ ରାଜ୍ୟର ଗୋଟିଏ ବିଧାନସଭା ଅଛି, ମନ୍ତ୍ରୀମଣ୍ଡଳ, ମୁଖ୍ୟମନ୍ତ୍ରୀ ଏବଂ ଗଭର୍ଣ୍ଣର ମଧ୍ୟ ଅଛନ୍ତି । କିନ୍ତୁ ସେ ରାଜ୍ୟକୁ ଯିବାକୁ ପ୍ଲେନ୍ ସର୍ଭିସ ତ ଦୂରର କଥା ରେଲ ଲାଇନଟିଏ ମଧ୍ୟ ନାହିଁ । ଆମର ପଚିଶ ବର୍ଷର ସ୍ୱାଧୀନତା କେବଳ ଦିଲ୍ଲୀର ନବାବଙ୍କ ରଙ୍ଗିଗଲା ବୁଲି ଶେଷରେ ଲାଲକିଲ୍ଲାରେ ପତାକାଟିଏ ପୋତି ଦେଇଛି । ସେଇ ସେତିକରେ କାମ ସରିଯାଇଛି । ସେତେବେଳର ନବାବମାନେ ଯେମିତି କେବଳ ନିଜର ପ୍ରାସାଦ ନିର୍ମାଣ ଏବଂ ନିଜ ପ୍ରେମିକା ପାଇଁ ସ୍ମୃତି ମନ୍ଦିର ନିର୍ମାଣରେ ସମଗ୍ର ଜୀବନକାଳ ଶେଷ କରୁଥିଲେ ଏବର 'ନବାବମାନେ' ତାଙ୍କ ଜୀବନକାଳ ମଧ୍ୟରେ କେବଳ ନିଜର କୋଠା ତିଆରିରେ ବ୍ୟସ୍ତ ରହୁଛନ୍ତି ।

କେବଳ ଅରୁଣାଚଳ ନୁହେଁ ଭାରତର ଅନେକଗୁଡ଼ିଏ ରାଜ୍ୟକୁ ଏ ଯାଏ ରେଳଲାଇନଟିଏ ଯାଇ ପାରିନି । ଅପର ପକ୍ଷରେ ଏପରି କେତୋଟି ରାଜ୍ୟ ଅଛି ଯୋଉଠି ରେଳ ଲାଇନ ଏପରି ଜାଲ ପରି ବିଛେଇ ହୋଇ ଯାଇଛି ଯେ ସେଠି ଏବେ କଳ କାରଖାନା ବସେଇବାକୁ ମଧ୍ୟ ଜାଗା ମିଳୁନି । ଏହାହିଁ ଭାରତର ପ୍ରକୃତ ଅବସ୍ଥା ।

ରବିବାରକୁ ଗ୍ରାଣ୍ଡ ଟ୍ରଙ୍କରୁ କେବଳ ଛୁଟି ନେଇ ମୁଁ ପ୍ରଥମେ ଗୌହାଟିରୁ ଫେରିଗଲି । ସେଠୁ କାମ ସାରି ଅଗରତାଲାରୁ ଇଟାନଗରରେ ଥିବା ରାଜଭବନକୁ ଫୋନ୍ କଲି । ଗୋବିନ୍ଦ ମିଶ୍ରଙ୍କୁ ମୋ ଯିବା କଥା ଜଣାଇ ଦେଲି । ସେ ତ ଆଗରୁ ସବୁ କଥା ଜାଣିଥିଲେ, ତେଣୁ ମୋର ଆଉ କିଛି ଚିନ୍ତା କରିବାର ନଥିଲା । କିନ୍ତୁ ତାଙ୍କଠୁ ଯେତେବେଳେ ଶୁଣିଲି ଯେ ରାଜ୍ୟପାଳ ମହୋଦୟ ବାହାରକୁ ଯାଇଛନ୍ତି ସେତେବେଳେ ମୋ ମନଟା ଖରାପ ହୋଇଗଲା ।

ଗୌହାଟିରୁ ଇଟାନଗର ଯିବାକୁ ହେଲେ ତେଜପୁର ଦେଇ ଅପର ଆସାମ ତଥା ଅରୁଣାଚଳ ସୀମା ପାଖେ ପାଖେ ଯାଇ ଇଟାନଗରରେ ପହଞ୍ଚିବାକୁ ହୁଏ । ତାହା ହିଁ ହେଲା । ସନ୍ଧ୍ୟା ସାତଟାରେ ଆମ ବସ୍ ଗୌହାଟି ଛାଡ଼ି ଦେଲା । ଏଗୁଡ଼ିକ ନନଷ୍ଟପ୍ ବସ୍ । ରାସ୍ତାରେ ଆଉ କୋଉଠି ପ୍ରାୟ ଅଟକେ ନାହିଁ । କେବଳ ଥରେ ଖାଇବାକୁ ଅଟକେ ଥିଲା । ମୁଁ ବି ବସ୍‌ରେ ବସିଲାମାତ୍ରେ ଏମିତି ଶୋଇ ପଡ଼ିଲି ଯେ ଆଉ କିଛି ଦେଖିବାର ସୁଯୋଗ ପାଇନି । ଭୋର ହେଲା ବେଳକୁ ଦେଖିଲି ଆମ ବସ୍ ଅଟକିଛି ଗୋଟାଏ ଚେକ୍ ଜାଗାରେ । ଚାରିପାଖେ ଘଞ୍ଚ ଜଙ୍ଗଲ ଓ ପାହାଡ଼, ସେଇଟା ହିଁ ଅରୁଣାଚଳର ସୀମା ରେଖା । ପୁଲିସ ଆସି ଆମକୁ ଚେକ୍ କଲେ ।

ଉତ୍ତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ଏବେ ମଧ୍ୟ 'ଇନର୍ ପରମିଟ' ନ ନେଇ ପ୍ରବେଶ କରିବା ନିଷେଧ । ଏ ପ୍ରଥା ଇଂରେଜ ଅମଳରୁ ଚଳି ଆସୁଛି । ଦେଶର ସୁରକ୍ଷା ବ୍ୟବସ୍ଥାକୁ କଡ଼ାକଡ଼ି କରିବାକୁ ଏ ପ୍ରଥା ଚାଲୁ କରାଯାଇଛି । ତେଣୁ ରାଜ୍ୟ ବାହାରୁ କୌଣସି ଲୋକ ଏଠାକୁ ସହଜରେ ଆସି ପାରନ୍ତିନି ।

କିନ୍ତୁ ଏ ପ୍ରଥା ଦ୍ୱାରା ଉତ୍ତର ପୂର୍ବାଞ୍ଚଳରେ ଟୁରିଜିମ ପ୍ରସାର ଲାଭ କରି ପାରୁନାହିଁ । ଏହି ରାଜ୍ୟମାନେ ଅନେକ ଦିନୁ ସେ ନିୟମକୁ ଉଠେଇ ଦେବାକୁ କିମ୍ବା କୋହଳ କରିଦେବାକୁ ଦାବୀ କରି ଆସୁଛନ୍ତି । ଶ୍ରୀ ଦ୍ୱିବେଦୀ ମଧ୍ୟ ଗଭର୍ଣ୍ଣର ଥିଲା-ବେଳେ ଏହି ଦାବୀକୁ ସମର୍ଥନକରି କେନ୍ଦ୍ର ସରକାରଙ୍କୁ ଲେଖିଥିଲେ । କିନ୍ତୁ ସେଥିରେ କିଛି ଲାଭ ହୋଇନି । ତେବେ ସେ ଯାହା ହେଉ ପୁଲିସ ଯେତେବେଳେ ମୋତେ

ମାଣ୍ ମାଗିଲେ ମୁଁ ମୋର ସରକାରୀ ପରିଚୟ ପତ୍ର ଯାହା ମୋତେ ମୋ ଡ଼ିପାର୍ଟମେଣ୍ଟ ତରଫରୁ ମିଳିଥିଲା ତାକୁ ଦେଖାଇଲି । ସେମାନଙ୍କ ପାଇଁ ତାହା ହିଁ ଯଥେଷ୍ଟ ଥିଲା ।

ଆମ ବସ୍ ଯାଇ ଇଟାନଗରର ପ୍ରବେଶ ଦ୍ୱାର ନାହାର ଲଗୁନ ଠାରେ ପହଞ୍ଚିଲା ବେଳକୁ ପ୍ରାୟ ସକାଳ ୭ଟା । ସେଇଠୁ ଇଟାନଗର ପ୍ରାୟ ଚାରି କିଲୋମିଟର ହେବ । ସୁନ୍ଦର ପାହାଡ଼ ଭିତରେ ଉଠି ପଡ଼ି ଆମ ବସ୍ ଆଗେଇଗଲା । ପଛରେ ରହିଲା ନାହାର ଲଗୁନ । ଅରୁଣାଚଳର ପୁରୁଣା ରାଜଧାନୀ ।

ମୁଁ କଣ୍ଡକ୍ଟରକୁ ଆଗରୁ କହି ଦେଇଥିଲି । ମୁଁ ରାଜଭବନକୁ ଯିବି । ତେଣୁ ରାଜଭବନ ପାଖାପାଖି ଜାଗାରେ କମ୍ବା ବସ୍‌ଷ୍ଟାଣ୍ଡରେ ମୋତେ ଓହ୍ଲେଇ ଦେବେ ।

ମୁଁ ବସ୍‌ଷ୍ଟାଣ୍ଡରେ ଓହ୍ଲେଇ ଅଧେ ଅଧେ ଆଗଉଥାଏଁ ଜଣେ ଭଦ୍ରଲୋକ ମୋତେ ପଚାରିଲେ, ଆପଣ ମିଷ୍ଟର ମହାପାତ୍ର ?

ମୁଁ ଆଶ୍ଚର୍ଯ୍ୟ ହେଲି । ଏମିତି ନଗ୍ରଟିଆ ଜାଗାରେ ମୋତେ କିଏ ଜାଣିଲା ? ମୁଁ ମୁଣ୍ଡ ଟୁଙ୍ଗାରିବାରୁ ସେ କହିଲେ ମୁଁ ଦେ-ଗଭର୍ଣ୍ଣରଙ୍କ ସିକ୍ୟୁରିଟି ଅଫିସର । ଆପଣଙ୍କୁ ରିସିଭ କରିବାକୁ ମୁଁ ବସ୍‌ଷ୍ଟାଣ୍ଡ ଯାଇଥିଲି । ସେଠି ପାଇଲିନି ।

ମୁଁ କହିଲି ମୁଁ ଅନ୍ୟ ଗୋଟିଏ ବସ୍‌ଷ୍ଟାଣ୍ଡରେ ଓହ୍ଲେଇ ପଡ଼ିଲି ।

ଆମେ ସାଙ୍ଗ ହେଇ ଆସିଲୁଁ ରାଜଭବନକୁ । ବାଟରେ ଦେଖାହେଲା ଗୋବିନ୍ଦ ମିଶ୍ର ଓ ତାଙ୍କ ସହଧର୍ମିଣୀଙ୍କ ସହିତ । ସେମାନେ ମର୍ଣ୍ଣିଂ ଓ୍ୱାକ୍‌ରେ ଯାଉଥିଲେ । ସାମାନ୍ୟ କଥାବାର୍ତ୍ତା ପରେ ମୁଁ ରାଜଭବନକୁ ଆସିଲି ।

## ରାଜଭବନ

ରାଜଭବନକୁ ଦେଖି ମୁଁ ବିମୋହିତ ହୋଇପଡ଼ିଲି । ମୁଁ ଭାବିଲି, ଯେ କେହି ଦେଖିବା ମାତ୍ରେ ଅଭିଭୂତ ହୋଇପଡ଼ିବ । ଶ୍ରେଷ୍ଠ ପାହାଡ଼ ଉପରେ ଅବସ୍ଥିତ । ସେ ପାହାଡ଼ର ଦୃଶ୍ୟ, ସେ ଫୁଲ, ଗଛପତ୍ର, ତାର ବାଡ଼ିବଗିଚା, ଘାସ ପଡ଼ିଆ, ସରୁ ଅଙ୍କାବଙ୍କା ରାସ୍ତା । ମୋର ଦୀର୍ଘ ପଥର ଯାତ୍ରା, ରାତି ଅନିଦ୍ରା ସବୁ କ୍ଳାନ୍ତି, କ୍ଳେଶ ମୋ ମନରୁ ଏକବାରେ କେଉଁଆଡ଼େ ଉଭେଇଗଲା ।

ଜଣେ ଅଫିସର ମୋତେ ମୋ ରୁମ୍‌କୁ ନେଇଗଲେ । ତଳ ମହଲାର ଏ କୋଠରୀଟିର ସାଜସଜ୍ଜା ଯେ କୌଣସି ପଞ୍ଚତାରକା ହୋଟେଲର ସୁଯୋଗ ସହିତ ପ୍ରାୟ ସମାନ । ମୁଁ ଚା' ପାନ ପରେ ଶ୍ରୀଯୁକ୍ତ ମିଶ୍ରଙ୍କ ସହିତ ମୋର

ପ୍ରୋଗ୍ରାମ ବିଷୟରେ କିଛିଏ କଥାବାର୍ତ୍ତା କରିନେଲି । ତାଙ୍କ ସହିତ କଥାବାର୍ତ୍ତା-ବେଳେ ସେ କହିଲେ, ଅରୁଣାଚଳରେ ଦେଖିବାର ଅନେକ କିଛି ଅଛି, କିନ୍ତୁ କିଛି ନାହିଁ ମଧ୍ୟ ।

କେମିତି ? ମୁଁ ପଚାରିଲି ।

ସେ କହିଲେ, ଅରୁଣାଚଳରେ ପ୍ରତ୍ୟେକ ଜିଲ୍ଲା, ପ୍ରତ୍ୟେକ ସବ୍‌ଡିଭିଜନ ଏବଂ ଏପରିକି ପ୍ରତ୍ୟେକ ଗ୍ରାମ, ନଦୀ, ପାହାଡ଼, ପର୍ବତ ଦେଖିବାର କଥା । ସେ ଦୃଶ୍ୟ ଆପଣ ଥରେ ଦେଖିଲେ ହୁଏତ ସେଠି ସ୍ଥାଣୁ ପାଲଟି ଯିବେ । ଭାରତର ଅନ୍ୟ କୌଣସି ଅଞ୍ଚଳରେ ଏମିତିକା ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ସ୍ଥାନଟିଏ ପାଇବେନି । କିନ୍ତୁ ଅସଲ କଥା ହେଲା ଆପଣ ସେଠିକୁ ଯିବେ କେମିତି ?

ସେ ମୋତେ ସେ ଅଞ୍ଚଳର ଗମନାଗମନର ସୁବିଧା ଅସୁବିଧା କଥା ଯେତିକି କହୁ ଥାଆନ୍ତି ମୋ ମନ ସେତିକି ମରି ମରି ଆସୁଥାଏ ।

କଲିକତା ପରେ ମୁଁ ମୋ କାର୍ଯ୍ୟକ୍ରମଟିକୁ କାଟଛାଣ୍ଟ କରି ଏକଦମ ଶ୍ଲେଟ କରିଦେଲି ।

ଶ୍ରୀ ଦ୍ୱିବେଦୀଙ୍କୁ ରାଜଭବନରେ ଦେଖିବାର ଏବଂ ତାଙ୍କ ସହିତ ଦି'ପଦ କଥା ହେବାର ସୁଯୋଗ ନାହିଁ ବୋଲି ମୁଁ ତ ଆଗରୁ ଜାଣିଥିଲି । ତେଣୁ ଭ୍ରମଣର ପ୍ରୋଗ୍ରାମ ମୋର ମୋଟାମୋଟି ଅନାକର୍ଷଣୀୟ ହୋଇ ପଡ଼ିଲା । ମୁଁ ଶେଷରେ ଠିକ୍ କଲି ଯେ କେବଳ ଇଟାନଗର ବୁଲାବୁଲି କରି ଫେରିଯିବି ।

## ଅରୁଣାଚଳର ଇତିହାସ

ଶ୍ରୀ ଦ୍ୱିବେଦୀ ତାଙ୍କର ଅରୁଣାଚଳରେ ରହଣି ସମୟରେ 'ରାଜଭବନରୁ ହସ୍ତଲିପି' ବୋଲି ଯେଉଁ ପୁସ୍ତକଟି ଲେଖିଛନ୍ତି ତାହା ଓଡ଼ିଆ ସାହିତ୍ୟର ଝଣ୍ଡେ ଅମୂଲ୍ୟ ରତ୍ନ । ମୁଁ ଗଲାବେଳକୁ ଲେଖା ସରିଥାଏ ଏବଂ ଛପା କାମ ଚାଲିଥାଏ ବୋଲି ଶୁଣିଲି । ସେ ବହିର ପ୍ରାୟ ଅଧିକାଂଶ ମୁଁ ପ୍ରଜାତନ୍ତ୍ରରେ ପଢ଼ିଥିଲି ।

ଶ୍ରୀ ଦ୍ୱିବେଦୀ ସେଥିରେ ଲେଖିଛନ୍ତି ଅରୁଣାଚଳଟା ଭୁଲ ଶବ୍ଦ । ତାହା ପ୍ରକୃତରେ 'ଅରୁଣାଞ୍ଚଳ' ହୋଇ ଥାଆନ୍ତା ।

ଠିକ୍ କଥା । ମୁଁ ବି ବୁଝି ପାରେନା ଏମିତି ଗୋଟାଏ ନାଁ କେମିତି ରହିଲା । ତେବେ ମୁଁ ଭାବୁଚି ନାଁଟା ଠିକ୍ ଥାଉ ବା ନଥାଉ, ଅରୁଣାଚଳ ଶବ୍ଦଟା କେମିତି ଗୋଟେ ରୋମାଣ୍ଟିକ୍ ମନେ ହେଉଛି । ଗୋଟାଏ ସଙ୍ଗୀତର ମୂର୍ଚ୍ଛନା ଯେମିତି ସ୍ୱା ସହିତ ମିଶିଯାଉଚି । ବେଶ ମିଠା ଶୁଭୁଚି । ଠିକ୍ ଯେମିତି ମିଠା ଶୁଭେ ମେଘାଳୟ ବା ହିମାଳୟ ।

ଅରୁଣାଚଳ ପୂର୍ବପୂର ଗୋଟିଏ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା ୧୯୮୭ ଫେବୃଆରୀ ୨୦ ରେ ।

ଅରୁଣାଚଳ ନାଁ'ଟା ଯେତେ ନୂଆ ହେଲେ ମଧ୍ୟ ସେ ରାଜ୍ୟ ତାର ଇତିହାସ, ସାହିତ୍ୟ, ଭାଷା, ସଂସ୍କୃତି ଏସବୁ ବହୁ ପୁରୁଣା । ପୁରାଣକୁ ମାନି ଯାଇଛି ତାର ଚେର । ଏକଥା ବିଶ୍ୱାସ କରି ହୁଏନା ।

ରାଜ ଭବନର ଶତ୍ରୁଂ ରୁମ୍‌ରୁ ମୁଁ ପାଇଥିଲି କେତେଖଣ୍ଡ ବହି । ସେଥିରୁ ଗୋଟିଏ ଗ୍ରେଟ ଚଟି ବହି ଥିଲା, "Arunachal Pradesh, Glimpses of land and People." ସେଥିରେ ଲେଖା ଅଛି ମହାଭାରତ ଓ କାଳିକା ପୁରାଣରେ ଅଛି ଯେ ପ୍ରଭୁ ପର୍ବତ ଉପରେ ହିଁ ପରଶୁରାମ ତାଙ୍କ ମାଆକୁ ହତ୍ୟା କଲା ପରେ ସେ ରକ୍ତାକ୍ତ କୁଠାରକୁ ସେଠାକାର ଗୋଟାଏ କୁଣ୍ଡରେ ଧୋଇ ସଫା କରିଥିଲେ ବୋଲି ତାର ନାଁ ପରଶୁରାମ କୁଣ୍ଡ ।

ସେ ସ୍ଥାନ ଏବେ ମଧ୍ୟ ଭାରତ ବିଖ୍ୟାତ । ଲୋହିତ ନଦୀ କୂଳରେ ଅବସ୍ଥିତ ଏ ସ୍ଥାନକୁ ପ୍ରତିବର୍ଷ ମକର ସଂକ୍ରାନ୍ତି ଦିନ ହଜାର ହଜାର ଲୋକ ଆସନ୍ତି ।

ବ୍ୟାସଦେବ ଏହି ରାଜ୍ୟରେ ତପସ୍ୟା କରିଥିଲେ ବୋଲି କୁହାଯାଏ ଏବଂ ରାଜା ଭୀଷ୍ମକ ତାଙ୍କର ସାମ୍ରାଜ୍ୟ ସ୍ଥାପନ କରିଥିଲେ । କୃଷ୍ଣ ମଧ୍ୟ ଏହି ମାଟିରେ ରୁକ୍ମିଣୀଙ୍କୁ ବିବାହ କରିଥିଲେ ବୋଲି କଥିତ ଅଛି ।

ତିବ୍ବତ ଉପତ୍ୟକରେ ଅବସ୍ଥିତ ଶିବୁକାନଗର ପ୍ରସ୍ତାବିତ ବାର ଶହରୁ ନଅଶହ ଭିତରେ ଚୁଟିଆ ନାମକ ପାର୍ବତ୍ୟ ଜାତିର ରାଜ୍ୟ ଥିଲା । ତାର ମାଟି ତଳୁ ଏବେ ଯେଉଁ ଦୁର୍ଗର ଧ୍ୱଂସାବଶେଷ ବାହାରିଛି ତାହା ଅରୁଣାଚଳର ଅତୀତର ଗୌରବାବହ ଇତିହାସର ସୂଚନା ଦିଏ ।

ପୁଣି ପୂର୍ବ ସିଆଙ୍ଗ ଜିଲ୍ଲାର ଲିକାବାଲି ପାଖରେ ଥିବା ମାଲିନୀଥାନ ଠାରେ ଆବିଷ୍କୃତ ହୋଇଥିବା ଅନେକ ଗୁଡିଏ ପଥର ମୂର୍ତ୍ତିରୁ ପ୍ରମାଣିତ ହେଉଛି ଯେ ଅରୁଣାଚଳର ଇତିହାସ ଭାରତର ଯେକୌଣସି ଅଞ୍ଚଳର ସଂସ୍କୃତି ଓ ଇତିହାସ ସହିତ ସମାନ । ଭାରତର ମୁଖ୍ୟ ଅଂଶ ସହିତ ସେମାନଙ୍କର ଏକଦା ଏକ ଦୃଢ଼ ସାଂସ୍କୃତିକ ସମ୍ପର୍କ ଥିଲା ବୋଲି ମନେ ହେଉଛି । ମାଲିନୀଥାନରେ ଥିବା ମନ୍ଦିର ଓ ତାର କାରୁକାର୍ଯ୍ୟ ଓଡ଼ିଶାର ମନ୍ଦିର ଗାତ୍ରରେ ଥିବା ଚିତ୍ର ସହିତ ଅନେକାଂଶରେ ସାମଞ୍ଜସ୍ୟ ରହିଛି ବୋଲି ମଧ୍ୟ ସେ ପୁସ୍ତକରେ ଉଲ୍ଲେଖ ଅଛି ।

ସମଗ୍ର ଭାରତର ପ୍ରଦେଶମାନଙ୍କ ଭିତରେ ଅରୁଣାଚଳ ବୋଧେ ଏକମାତ୍ର ରାଜ୍ୟ ଯେଉଁଠି ଖ୍ରୀଷ୍ଟିଆନମାନଙ୍କର ଅନୁପ୍ରବେଶ ହୋଇନଥିଲା । ତେଣୁ ସେଠି

ଏବେ ମଧ୍ୟ ଖ୍ରୀଷ୍ଟିଆନ ମିଶନାରୀ ଅନେକ କମ୍ ଅଛନ୍ତି । ସେଠାକୁ ଖ୍ରୀଷ୍ଟିଆନ ପାଦ୍ରୀମାନେ କାହିଁକି ଯାଇନଥିଲେ କିମ୍ବା ସେଠାକୁ ସେମାନେ ଯାଇଥିଲେ ସେ ରାଜ୍ୟର ଅବସ୍ଥା ଏବେ କଅଣ ହୋଇଥାଆନ୍ତା ତାହା ଏକ ଭିନ୍ନ ପ୍ରଶ୍ନ । ମାତ୍ର ବୁଇଟା ଦିନ ପାଇଁ ବୁଲିବାକୁ ଯାଇଥିବା ବେଳେ ଏ ପ୍ରଶ୍ନ ଯେ ମୋ ମନକୁ ଆନ୍ଦୋଳିତ ନ କରିଚି ତା ନୁହେଁ ।

ମିଶନାରୀମାନେ ନାଗାଲାଣ୍ଡ, ମଣିପୁର, ମିଜୋରାମ ଏବଂ ମେଘାଳୟର ଦୁର୍ଗମ ଗିରିପଥ ଅତିକ୍ରମ କରି ଯାଇ ସେ ସ୍ଥାନମାନଙ୍କରେ ବସତି ସ୍ଥାପନ କରି ଧର୍ମ ପ୍ରଚାର କଲେ । ନାଗାଲାଣ୍ଡ ଯୋଉ ସ୍ଥାନକୁ ମଣିଷ ମୋଟେ ଯାଇପାରୁ ନଥିଲି, ଉଇଲିଅମ୍ କ୍ଲାର୍କ ଓ ତାଙ୍କ ସ୍ତ୍ରୀ କପରି କଷ୍ଟ ସ୍ୱୀକାର କରି ସେଠାକୁ ଗଲେ ଏବଂ ସାରାଜୀବନ ଅତିବାହିତ କରିଦେଲେ ସେ କଥା ମୁଁ ଅନ୍ୟତ୍ର ଲେଖିଚି । କିନ୍ତୁ ସେମାନେ ଉତ୍ତର ପୂର୍ବାଞ୍ଚଳର ନେଫା (NEFA) ବା ଯାହା ଆଜିର ଅରୁଣାଚଳ, ଭୁଟାନ, ସିକିମ ପ୍ରଭୃତି ମନୋରମ ରାଜ୍ୟକୁ କାହିଁକି ଯାଇ ନଥିଲେ ତା'ର ସନ୍ତୋଷଜନକ ଉତ୍ତର ମିଳେ ନାହିଁ ।

ଗୋଟିଏ କଥା ମନକୁ ଆସୁଚି । ଅରୁଣାଚଳ, ଭୁଟାନ ଓ ସିକିମ ପ୍ରଭୃତି ରାଜ୍ୟରେ ସେତେବେଳେ ବୌଦ୍ଧଧର୍ମର ପ୍ରଭାବ ଖୁବ୍ ଥିଲା । ଏବେ ମଧ୍ୟ ଅଛି । ସମ୍ଭବତଃ ଖ୍ରୀଷ୍ଟିଆନ ମିଶନାରୀମାନେ ବୌଦ୍ଧଧର୍ମର ପ୍ରଭାବକୁ କ୍ଷୁଣ୍ଣ କରିବାକୁ ସାହସ କରୁନଥିଲେ । ସେଥିପାଇଁ ହୁଏତ ସେମାନେ ତିବ୍ବତ, ଚୀନ, ଆମର ପୂର୍ବ ପଟରେ ଥିବା ବ୍ରହ୍ମଦେଶ (ମିଆନମାର) କିମ୍ବା ଦକ୍ଷିଣରେ ଥିବା ଶ୍ରୀଲଙ୍କାରେ ମଧ୍ୟ ଖୁବ୍ ବେଶି ପ୍ରଭାବ ବିସ୍ତାର କରି ନାହାନ୍ତି । କାଶ୍ମୀରର ଉତ୍ତର ପୂର୍ବରେ ଥିବା ଲଦାଖ ଅଞ୍ଚଳ ମଧ୍ୟ ସେମାନଙ୍କ ପ୍ରଭାବରୁ ମୁକ୍ତ ।

ଅନ୍ୟ ଦିଗରୁ ଦେଖିବାକୁ ଗଲେ ମୁସଲମାନମାନଙ୍କ ରାଜ୍ୟରେ ମଧ୍ୟ ସେମାନେ ଧର୍ମପ୍ରଚାର କରି ନାହାନ୍ତି । ଯେ ଅଞ୍ଚଳରେ ସେମାନେ ନ୍ୟୂନ ହୋଇ ରହିଯାଇଚନ୍ତି । ହିନ୍ଦୁମାନଙ୍କର ଧାର୍ମିକ ଚିନ୍ତନରେ ଥିବା ଦୁର୍ବଳତା ବୋଧେ ସେମାନଙ୍କୁ ବେଶି ପ୍ରଲୋଭିତ କରିଚି । ନଚେତ୍ ଅରୁଣାଚଳର ଆଦିବାସୀ ଓ ଓଡ଼ିଶାର ଆଦିବାସୀ ଏବଂ ସେମାନଙ୍କର ଦାରିଦ୍ର୍ୟ ଭିତରେ ଆଉ କଅଣ ଫରକ ଥାଇପାରେ ?

ଯେ ଯା ହେଉ, ସେ ଦିନଟା ଯାକ ମୁଁ ଇଟାନଗରର କେତୋଟି ଦର୍ଶନୀୟ ସ୍ଥାନ ବୁଲି ଦେଖିଲି । ସମଗ୍ର ସହରଟା ତ ପାହାଡ଼ିଆ । ଦାର୍ଜିଲିଂ କିମ୍ବା ଶିଲଂ ଭଳିଆ ଦେଖିବାକୁ । ଗୋଟାଏ ଅଂଶ ପାହାଡ଼ ଉପରେ ତ ଅନ୍ୟଟି ପାଦଦେଶରେ କିମ୍ବା ପାହାଡ଼ ମଝିରେ । କୋଠାଗୁଡ଼ିକ ପ୍ରାୟ ନୂଆ । ସୁନ୍ଦର ସ୍ଥାପତ୍ୟର ସ୍ୱାକ୍ଷର

ବଢ଼ାଇ ଦେଇଛି । ଗ୍ରାଣ୍ଡ୍ ହୋଟେଲ୍ ବେଶ୍ ପରିଷ୍କାର । ଝରଣା ପାଖରେ ଅପୂର୍ବ ଫୁଲ ଓ ଲତାଗୁଳ୍ମର ସୁନ୍ଦର ଶୋଭାଯାତ୍ରା । ଆଖି ଲାଖି ଯାଏ ।

ଗୋଟାଏ ହ୍ୟାଣ୍ଡିକ୍ରାଫ୍ଟ୍ ଦୋକାନକୁ ଉଠିଗଲି । ବେତ ଓ ବାଉଁଶର କି ସୁନ୍ଦର ଆସବାବ ପତ୍ର । ସମଗ୍ର ଭାରତର ପୂର୍ବାଞ୍ଚଳ ତା'ର ବେତ ଓ ବାଉଁଶର ଫର୍ଣ୍ଣିଚର ପାଇଁ ଗର୍ବ କରେ । ସେଠା'ର ମ୍ୟାନେଜର ମୋତେ ଗୃହଆଡ଼ ବୁଲାଇ ଦେଖେଇ ଆଣିଲେ । ଏତେବଡ଼ ଷ୍ଟଲ ମୁଁ ଆଗରୁ କୋଉଠି ଦେଖିନଥିଲି । ଷ୍ଟଲ୍‌ର ପଛପଟେ ରହିଛି ବଡ଼ ଓ୍ୱାର୍କସପ୍ । ସେଠି ପ୍ରାୟ ପଚାଶ ଷାଠିଏ ଜଣ କାରିଗର କାମ କରୁଛନ୍ତି । ଟ୍ରକ ଟ୍ରକ ବେତ ଓ ବାଉଁଶ ଆସୁଛି ଓ କାରଖାନାରେ ଫର୍ଣ୍ଣିଚର ତିଆରି ହେଉଛି ।

ଅରୁଣାଚଳରେ ଏ ଯାଏ ସେମିତି କିଛି ବାଡ଼ ଶିଳ୍ପ ବା କଳକାରଖାନା ହୋଇନି । ଲୋକଙ୍କର ପ୍ରଧାନ ଜୀବିକା କୃଷି । ତା ସତ୍ତ୍ୱେ ତାର ମୁଣ୍ଡପିଛା ଆୟ (୮୯-୯୦) ୪୧୭୭ ଟଙ୍କା ଥିବା ସ୍ଥଳେ ଓଡ଼ିଶାର ମାତ୍ର ୩୦୭୭ ଟଙ୍କା (୮୯-୯୦) ସେମାନଙ୍କ ସାକ୍ଷରତା ହାର ଅବଶ୍ୟ ଆମଠାରୁ କମ୍ । ସେମାନଙ୍କର ୪୧.୨୨ ଥିଲାବେଳେ ଆମର ୪୮.୬୫ । ଖୁବ୍ ବେଶୀ ଫରକ ନାହିଁ ।

ମୁଁ ଦେଖିଲି ସହରଟି ଯେତିକି ସୁନ୍ଦର ତା'ର ଲୋକମାନେ ସେତିକି ସୁଖୀ ।

ଆଉ କଅଣବା ସେଠି ଅଛି ଦେଖିବାକୁ ? ମନ ପ୍ରଶ୍ନଉଠିଲା ।

ରାଜଭବନକୁ ଫେରୁଥିବା ବେଳେ ଡ୍ରାଇଭର ମୋତେ ଆଉ ଗୋଟାଏ ସ୍ଥାନକୁ ନେଇଗଲା । ତାହା ଥିଲା ଡ଼ିପାର୍ଟମେଣ୍ଟ୍ ଅଫ୍ ରିସର୍ଚ୍ଚ । ଏମିତି ଗୋଟାଏ ଅଫିସ୍ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଅନ୍ୟ କୌଣସି ରାଜ୍ୟରେ ଏ ବିଭାଗ ଅଛି ବୋଲି ମୁଁ ଜାଣେନା । ଅଫିସ୍‌ରେ ପାଞ୍ଚ ବୁଝିଲି । ଜଣେ ଅଫିସର ମୋତେ କହିଲେ ଅରୁଣାଚଳର ଭାଷା, ସାହିତ୍ୟ ଓ ସଂସ୍କୃତି ଉପରେ ମୋଟାମୋଟି ଗବେଷଣା ହୁଏ । ନୃତାତ୍ତ୍ୱିକ ଗବେଷଣା ତାର ମୁଖ୍ୟ ଅଂଶ । ତାଙ୍କର ପୁସ୍ତକ ପ୍ରକାଶନ ବିଭାଗ ବୁଲି ଦେଖିଲି । ଦୁଇଖଣ୍ଡ ବହି କିଣି ଆଣିଲି । ତନ୍ମଧ୍ୟ Arunachal Pradesh, An Overview ଲେଖିଛନ୍ତି ଓଷ୍ଟ୍ରେର ପାରୁଲ ଦତ୍ତ ଯେ କି ସେତେବେଳେ ସେ ବିଭାଗର ନିର୍ଦ୍ଦେଶିକା ଥିଲେ । ଅନ୍ୟ ବହିଟି Myths of the SHIMONGS of the upper SIANG. ଏ ବହିଟିକୁ ଲେଖିଛନ୍ତି ତରୁଣ ଭଟ୍ଟାଚାର୍ଯ୍ୟ ।

ଏ ବହିଟି ଅତ୍ୟନ୍ତ ଉପାଦେୟ । ଅରୁଣାଚଳର 'ଆଦି' ଜାତିମାନଙ୍କ ଭିତରେ 'ସିମୋଙ୍ଗ' ଜାତି ଅପେକ୍ଷାକୃତ ଅଧିକ ଉନ୍ନତ । ସେମାନଙ୍କର

ଲୋକକଥା ଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ । ମୁଁ ଅରୁଣାଚଳ ଯିବା ପୂର୍ବରୁ ଏକଥା ଜାଣିଥିଲି ଏବଂ ସେଇ ପ୍ରକାର କେତେକ ଲୋକକଥା ସଂଗ୍ରହ କରିବା ମୋର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା । ଶ୍ରୀ ଭଟ୍ଟାଚାର୍ଯ୍ୟ ଅରୁଣାଚଳ ଜନ୍ମ ହେବା ପୂର୍ବରୁ ଦୀର୍ଘଦିନ ଧରି ଅପର୍ ସିଆଙ୍ଗ ଅଞ୍ଚଳରେ ପଲିଟିକାଲ ଅଫିସର ଭାବେ କାମ କରିଥିଲେ ଏବଂ ଏହି ଉନ୍ନତ ଉପଜାତି ସମ୍ପର୍କରେ ଗବେଷଣା ମଧ୍ୟ କରିଥିଲେ । ତାଙ୍କର ଏ ବହିଟିରେ ସେ ଅନେକଗୁଡ଼ିଏ ସିମୋଙ୍ଗ ଜାତିର ଲୋକକଥାର ଇଂରାଜୀ ଅନୁବାଦ ସନ୍ନିବିଷ୍ଟ କରିଥିବାର ଦେଖିଲି ।

ମୋ ପାଖରେ ଅଗରୁ ଆସାମ ଓ ତାର ବିଭିନ୍ନ ପାହାଡ଼ିଆ ଜାତି ଓ ଉପଜାତିର ଲୋକକଥାର ଖଣ୍ଡିଏ ବହି ଥିଲା । ସେଥିରୁ କିଛି ଅନୁବାଦ ମଧ୍ୟ କରିଛି । ଏବେ ସିମୋଙ୍ଗମାନଙ୍କ ଲୋକକଥାକୁ ତା ସହିତ ମିଶେଇ ଦେଖିବା ମୋର ଉଦ୍ଦେଶ୍ୟ ।

ଶେଷରେ ଅରୁଣାଚଳୀମାନଙ୍କର ଲୋକନୃତ୍ୟ କଥା କହି ଶେଷ କରିବି । ଏମାନଙ୍କର ଲୋକନୃତ୍ୟ ପ୍ରକୃତରେ ଦେଖିବାର କଥା । ଲୋକନୃତ୍ୟ ଗୁଡ଼ିକରେ ଉଭୟ ନାରୀ ଓ ପୁରୁଷ ଭାଗ ନିଅନ୍ତି । କିନ୍ତୁ 'ଆଦି' ମାନଙ୍କର ସମର ନୃତ୍ୟରେ ମହିଳାମାନେ ଭାଗ ନିଅନ୍ତି ନାହିଁ । ଅନେକ ପ୍ରକାର ଲୋକନୃତ୍ୟ ଭିତରୁ 'ଆଦି' ମାନଙ୍କର 'ପୋନୁଙ୍ଗ' ନୃତ୍ୟ ଏବଂ ଟାପୁ ( ସମର ନୃତ୍ୟ) କୁଆଡ଼େ ଅନେକଥର ଦିଲ୍ଲୀରେ ଜାତୀୟ ଉତ୍ସବମାନଙ୍କରେ ପ୍ରଦର୍ଶିତ ହୋଇ ପ୍ରଶଂସିତ ହୋଇଛି । ଏବେ ଏଇସବୁ ଲୋକନୃତ୍ୟ ଉପରେ ଅଧିକ ଗବେଷଣା ହେଲେ ତାକୁ କିପରି ଅଧିକ ଉନ୍ନତ କରାଯାଇ ପାରିବ ସେ ବିଷୟରେ ଚେଷ୍ଟା ଅବ୍ୟାହତ ଅଛି ।

ଅରୁଣାଚଳରେ ବେଶୀ ଓଡ଼ିଆ ନାହାନ୍ତି । ବରଂ ଦକ୍ଷିଣ ଭାରତୀୟ ଏବଂ ବଙ୍ଗଳା ଦେଶୀ କିଛି ଅଂଶ ଅଛନ୍ତି । ଅନ୍ତତଃ ଗୋଟିଏ ହୋଟେଲରେ ଦକ୍ଷିଣ ଭାରତୀୟ ଜଳଖିଆ ଥିବାର ଦେଖିଲି । ଦକ୍ଷିଣ ଭାରତୀୟ ଜଳଖିଆର ଜୟଯାତ୍ରା ଏବେ ଆକାଶ ଛୁଇଁଲାଣି । ଭାରତ ବାହାରକୁ ତ ଅନେକ ଦିନୁ ଗଲାଣି ।

କିନ୍ତୁ ଯାହା ହେଉନା କାହିଁକି ଏବେ ସୁଦ୍ଧା ଅରୁଣାଚଳୀମାନଙ୍କୁ ଭାରତର ମହାନସ୍ରୋତ ସହିତ ପୁରାପୁରି ମିଶେଇ ନେବାର ସେପରି କିଛି ଚେଷ୍ଟା ହେଉନି । ଶ୍ରୀ ଦ୍ୱିବେଦୀଙ୍କ ସମୟରେ ଯାହା ସବୁ ଆରମ୍ଭ ହୋଇଥିଲା ତାହା ସେ ବରାବର ରହିବ ଏଥିରେ ମୋର ସନ୍ଦେହ ରହିଛି ।

—୦—

# ଗେଲଙ୍ଗ ଫୁ ଓ ଭୁଟାନ

ଶନିବାରର ସଜ । ଗୋଟିଏ ହାଲକା ମୁଡ଼ରେ ମୁଁ ସେଦିନ ମୋ ନିଜ ବଗିଚା ଭିତରେ ଘୂରି ବୁଲୁଥିଲି । ଦେଖୁଥିଲି ଅଯତ୍ନ ଭାବରେ କେମିତି ଆସାମ ମାଟିରେ ସପୁରୀ ଗଛ ସବୁ ଆମ ସେପଟର ଗୁଳ୍ମ ବଣ ପରି ମାଡ଼ି ଯାଇଛି । ସପୁରୀ ଗଛକୁ ଏଠି ସେ ଉବାକୁ ପଡ଼େନି । ଓଡ଼ିଶାର କୃଷି ପ୍ରବାଦ "ଜ୍ୟେଷ୍ଠେ କଦଳୀ, ଆଷାଢ଼େ କଆ । ପୋତ ନ ପୋତ ହୁଅଇ ଠିଆ" ଏଠି ଭଲ ବୋଲି ପ୍ରମାଣିତ ହୋଇଛି । ମାଟି ଖୋଳିବା ଦରକାର ନାହିଁ । ଗଛ ଗାଡ଼ି ଖୋଳିବା ଦରକାର ନାହିଁ । ଧାନ ଗଛ ପରି ଏଆଡ଼େ ସମତଳ ଜମି ଉପରେ ସପୁରୀ ଗଛ ହୁଏ । ଖାଲି ଯେ ସମତଳ ଜମିରେ ସପୁରୀ ଗଛ ହୁଏ ତା ନୁହେଁ, ପାହାଡ଼ର ଘଞ୍ଚ ଜଙ୍ଗଲ ଭିତରେ ଟିଲ୍ଲ ଉପର ଯାଏ ଅରମା ବଣ ପରି ସପୁରୀ ଗଛ ହୋଇଥାଏ । ବିଶେଷ କରି ଯେଉଁମାନେ ଗୌହାଟୀରୁ ଶିଲଂ ଯାଇଛନ୍ତି ସେମାନେ ଏ ଅପୂର୍ବ ଦୃଶ୍ୟ କେବେ ଦେଖିବାକୁ ଭୁଲି ନଥିବେ ।

ମୋ କିଚେନ ଗାର୍ଡ଼େନ ଚାରିପଟେ ସେମିତି ସପୁରୀ ଗଛର ଶୋଭାଯାତ୍ରା । ନୂଆ କରି କିଏ ଫୁଟି ଆସୁଚି, ଲାଲ ଟକ ଟକ । ଦେଖିଲେ ପେଟ ପୂରିଯାଏ । ଆସାମ ପ୍ରଭୃତି ପୂର୍ବାଞ୍ଚଳ ରାଜ୍ୟ ତଥା ପଶ୍ଚିମବଙ୍ଗର ଶିଲିଗୁଡ଼ି, ଦାର୍ଜିଲିଂ ଓ କୁଚ ବିହାର ଅଞ୍ଚଳର ବର୍ଷଯାକ ହାଟବଜାରରେ ପ୍ରଚୁର ସପୁରୀ ମିଳେ ।

ସୁମି ମୋ ପଛେ ପଛେ ବୁଲୁଥାଏ, ତା କୁନି ଝିଅକୁ ଧରି । ସୁମି ମୋ ବଡ଼ ଝିଅ ।

ହଠାତ୍ ସେ କହି ଉଠିଲା "ବାବୁଜୀ ଆମେ ଗୋଟେ ଫରେନ କଣ୍ଟ୍ରି ଦେଖିବାର ସୁଯୋଗ ପାଇଲୁନି ତ ? ଆସାମକୁ ଆସି ମେ ର ଆଉ ଲାଭ କଅଣ ହେଲା ?"

ମୁଁ ଖୁସି ହୋଇଗଲି । ଆରେ ଏଇଟା ଗୋଟାଏ କଥା । କୋଉ ଫରେନ କଣ୍ଟ୍ରି ତୁ ଦେଖିବାକୁ ଚାହୁଁଚୁ ? ବାଂଲାଦେଶ ନା ଭୁଟାନ ? ଏବେ କହିଲେ ଏବେ ବାହାରି ଯିବା । ପାସପୋର୍ଟ କିଛି ଦରକାର ନାହିଁ । ବାଂଲାଦେଶଟା ୧୦୦ କିଲୋମିଟର ଭିତରେ ପଡ଼ିବ । ଆଉ ଭୁଟାନ ମାତ୍ର ୩୮୦ କିଲୋମିଟର ।

ତା ପରଦିନ ସକାଳ । ଖବର ଗ୍ରୁପର ପଢ଼ିଲା ଥଣ୍ଡା ସବୁ ଦିନ ପରି ସେ ଦିନ ମଧ୍ୟ ଜୁନର ଆକାଶଟାକୁ ଘେରି ରଖିଥାଏ ।

ଆମେ ତିନିଜଣ ବାହ୍ମଣପଣ୍ଡିଲୁ । ମୁଁ, ମୋ ସ୍ତ୍ରୀ ଏବଂ ଗୁଡ଼ି । ବ୍ରେକ୍-ଫାଷ୍ଟରେ ସାମାନ୍ୟ ଜଳଖିଆ । ଗ୍ରେଟ ପିଲା ପାଇଁ ଫ୍ଲାସ୍କରେ କିଛି ଦୁଧ, ପିଇବା ପାଣି । କିଛି ଫଳ ଧରି ଆମେ ଗାଡ଼ିରେ ବସିଲୁ । କଥା ହେଲା ଆମେ ଗୋଟାଏ ପୂର୍ବା ଫେରି ଆସି ଘରେ ଭାତ ଖାଇବୁଁ ।

ରବିବାରର ଛୁଟି ଦିନରେ ଆମ ମନଟା ଥାଏ ବେଶ ହାଲକା ଓ ସତେଜ ।

ହିମାଳୟରପାଦ ଦେଶରେ ଭୂଟାନ ସୀମା ଭିତରେ ଗୋଟିଏ କ୍ଷୁଦ୍ର ସହର । ଗେଲଙ୍ଗ ଫୁଚିଲ୍ ସହରର ଉତ୍ତର ସୀମାରୁ ଆକାଶ ଛୁଆଁ ଲମ୍ବ ଲମ୍ବ ପାହାଡ଼ ସବୁ ମଥା ଟେକି ଠିଆ ହୋଇଛନ୍ତି କୋଉ ଆଦିମ ଯୁଗରୁ ।

ଭୂଗୋଳ କହେ, ସେମାନେ ଦିନ ରାତି ସେମିତି ଠିଆ ହୋଇ ଥିବାରୁ ଆମ ଭାରତବାସୀଙ୍କ ପାଖକୁ ଚୀନ ଆଡ଼ୁ ବା ଉତ୍ତର ମେରୁ ଆଡ଼ୁ ଥଣ୍ଡାପବନ ଆସି ପାରେନି । ସେ କଥାଟା ସେଇଦିନ ମୁଁ ନିଜେ ଅନୁଭବ କଲି ।

ବଙ୍ଗାଇ ଗାଁରୁ ଗେଲଙ୍ଗ ଫୁ ଯିବାକୁ ହେଲେ ଆମକୁ ସୁଦ୍ରପୁର ବୋଡ଼ୋ ଅଧ୍ୟୁଷିତ ଅଞ୍ଚଳ ଭିତର ଦେଇ ଯିବାକୁ ହେବ । ବୋଡ଼ୋ ଆନ୍ଦୋଳନ ଆରମ୍ଭ ହେବା ଦିନୁ ସେ ଅଞ୍ଚଳକୁ ସାଧାରଣ ଭାବେ କେହି ଯିବାକୁ ସାହସ କରନ୍ତିନି । ମୋର ସେ ଭୟ କେବେ ନଥାଏ କାରଣ ସେ ଦିନ ମଧ୍ୟ ନଥିଲା । ତେଣୁ ଦିନ ୧୦ଟା ପୁଲା ଆମେ ଆସାମ ଓ ଭୂଟାନ ସୀମାରେ ପହଞ୍ଚିଗଲୁଁ ।

ସାମନାରେ ଗୋଟାଏ ବଡ଼ଗେଟ ଫାଟକ । ସିମେଣ୍ଟରେ ତିଆରି । ଫାଟକଟି କେତେକାଂଶରେ ସାରନାଥର ତୋରଣ ପରି । ଭୂଟାନ, ସିକିମ, ଦାର୍ଜିଲିଂ, ନେପାଳ ଓ ନାଗାଲାଣ୍ଡରେ ବୌଦ୍ଧ ସଂସ୍କୃତିର ଚିହ୍ନ ବେଶ ଆଖିରେ ପଡ଼େ । ଆସାମରେ ମଧ୍ୟ ଅଧିକାଂଶ ସ୍ଥାନରେ ବୁଦ୍ଧଦେବଙ୍କ ମନ୍ଦିର ଦେଖିବାକୁ ମିଳେ ।

ଡ୍ରାଇଭରକୁ ଗାଡ଼ି ଅଟକେଇବାକୁ କହିଲି ।

ଗେଟର ସାମ୍ନାରେ ଅଳ୍ପ କେତୋଟି ଦୋକାନ । ଦୁଇଟା ଚା ଜଳଖିଆ ଦୋକାନ ଏବଂ ଆଉ କେତେଟା ପାନ ସିଗାରେଟ ଦୋକାନ । ସାମାନ୍ୟ ଲୋକ ସମାଗମ । ଭୂଟାନିଜ ଓ ବୋଡ଼ୋ ମିଶାମିଶି । ଗେଟର ସାମନାପଟ ଭାରତର ଆସାମ । ଭିତରପଟ ଭୂଟାନ, ଗୋଟାଏ ସ୍ୱାଧୀନ ଓ ସାର୍ବଭୌମ ଦେଶ । ଭାବିଥିଲି ଗୋଟାଏ ଆନ୍ତର୍ଜାତିକ ସୀମାରେଖା ଅତିକ୍ରମ କଲାବେଳକୁ ବୋଧେ

ଆମ ପୋଲିସ ତାଙ୍କ ପୋଲିସ, ଆମ ଆର୍ମି ତାଙ୍କ ଆର୍ମି, ଉଭୟଙ୍କ ଇମିଗ୍ରେସନ ଅଫିସର, କଷ୍ଟମ୍ସ ଏବଂ ଏକସାଇଜ୍ ଅଫିସରମାନେ ଥିବେ ଏବଂ ଆମକୁ ବାଟ ଓଗାଳିବେ ।

ନା ସେ ସବୁ କିଛି ନଥିଲା ।

ମୁଁ ଆନ୍ତର୍ଜାତିକ ସୀମାରେଖାକୁ ଠିକ୍ ମଝିରେ ରଖି ଦୁଇ ପାଦ ଦୁଇ ପଟେ ରଖି ବୀରଦର୍ପେ ଛିଡ଼ା ହୋଇଗଲି ଏବଂ ସେହି ମୁହୂର୍ତ୍ତରେ ମନେ ମନେ ଭାବିଲି—ଆଃ ମୁଁ ଏବେ ଦୁଇଟି ସ୍ୱତନ୍ତ୍ର ଓ ସ୍ୱାଧୀନ ଦେଶର ମାଟି ଉପରେ ପାଦ ରଖି ଠିଆ ହୋଇଛି । ଏଇ କଥା ଭାବୁ ଭାବୁ ମୋ ଦେହ ଏକ ଅଜଣା ଆନନ୍ଦରେ ଆକୁଳିତ ହେବାକୁ ଲାଗିଲା ଏବଂ ସେଇ ମୁହୂର୍ତ୍ତରେ ମୁଁ ଜଣେ ଅତ୍ୟନ୍ତ ଭାଗ୍ୟବାନ ବ୍ୟକ୍ତି ବୋଲି ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେଲି ।

ମୋର ସ୍ୱପ୍ନ ଭାଙ୍ଗିଗଲା ଯେତେବେଳେ ମୋର ଦେଢ଼ ବର୍ଷ ବୟସର ଏବଂ ଦେଢ଼ ଫୁଟ ଉଚ୍ଚତାର ନାତୁଣୀ ମୋ ହାତକୁ ଟାଣିନେଲା ଏବଂ ଇଙ୍ଗିତ ଦେଲା ଆଗକୁ ଯିବାକୁ ।

ଆମେ ଆଗେଇଲୁ । ମାତ୍ର କେଇ ଫର୍ଲଙ୍ଗ ଯିବା ପରେ ପଡ଼ିଲା ଗୋଟାଏ ଡ୍ରପ-ବାର । ଭୁଟାନ ପୋଲିସର ଚେକ୍ ପୋଷ୍ଟ । ଗାଡ଼ି ଅଟକିଲା । ପାଖରେ ସିଣ୍ଡ୍ରି । ବାରଣ୍ଡାରେ ବାର ଡଉଡ଼ିଟାକୁ ଧରିଥିବା ପୋଲିସ କନେଷ୍ଟବଲ ଆମକୁ ଦେଖି କଅଣ ଭାବିଲା କେଜାଣି ବାରଟିକୁ ଟେକିଦେଲା । ମୁଁ ମନେ ମନେ ଭାବିଲି ଏମାନେ ଆମ ପୋଲିସ ଭଳି । ସମସ୍ତ ଆଇନ କାନୁନ ଭାଙ୍ଗି ମୁଁ ତାଙ୍କ ଦେଶ ଭିତରେ ପଶି ଯାଇଥିଲେ ମଧ୍ୟ କେବଳ ମୋର ବେଶ ପୋଷାକ ଦେଖି କିଛି ଟିକିଏ ନ ପଚାରି ଛାଡ଼ି ଦେଲା । ଭଲ ଲୋକଟିଏ ହୋଇଥିବ ନିଶ୍ଚୟ ।

ମୋ ଭିତରଟା କିନ୍ତୁ ଡରରେ କମ୍ପୁଥାଏ । ମୁନ୍ନି କଅଣ ଗୋଟେ ପଚାରିଲା । ମୁଁ ତାକୁ ଚୁଟାଣି ମାରିବାକୁ ଯାଇ କହିଲି କଅଣ ଏମାନେ କରିବେ ମ ! ଚାଲ ଦେଖାଯିବ ।

ଗାଡ଼ି ଆଗେଇଲା । ଗେଲଙ୍ଗ ଫୁ ସହର ପାର ହୋଇ ଆମ ଗାଡ଼ି ଆଗେଇଲା । ତା ପରେ ଗୋଟିଏ ଶୁଖିଲା ନଈ, ଟିକିଏ ବୋଲି ପାଣି ନାହିଁ । ତା' ଉପରେ ଗୋଡ଼ିର ସଡ଼କ । ନଈ ପାର ହେଲା ପରେ ପରେ ଆମେ ପହଞ୍ଚିଲୁ ଗୋଟାଏ ଝରଣା ପାଖରେ । ସିଧା ପାହାଡ଼ ମଥାରୁ ତଳକୁ ଓହ୍ଲାଇ ପଡ଼ିଚି ଠିକ୍ ଗୋଟାଏ ବରଗଛର ଓହଳ ପରି । ଝରଣା ପାର ହେଲା ପରେ ଯୋଉ ରାସ୍ତାଟା ପାହାଡ଼ ଦେହରେ ସାପ ପରି ଗୁଡ଼େଇ ହୋଇ ଉଠିଯାଇଚି ସେଇଟା ଯାଇଚି ଥିମ୍ପୁକୁ । ଥିମ୍ପୁ ଭୁଟାନର ରାଜଧାନୀ । ଝରଣା ଉପରେ ଗୋଟିଏ ଝୁଲା ପୋଲ ।

ପୋଲ ପାଖରେ ତିନି ଚାରିଟା ମିଲିଟାରୀ ତମ୍ବୁ । ଯେଉଁଠି ଭୁଟାନର ସୈନ୍ୟବାହିନୀ ଜଗିଛନ୍ତି । ସେଇଠୁ ଆଉ ଭିତରକୁ ଯିବାକୁ ଦିଆଯାଏନି । ଅନୁମତି ପତ୍ର ଲୋଡ଼ା ।

ଆମ ଗାଡ଼ି ସେଇଠି ଅଟକିଲା । ଝରଣା କୂଳେ କୂଳେ ଆମେ କିଛିଏ ବୁଲିଲୁ । ପିଲାମାନେ ବି ବେଶ୍ ଚାରିପଟେ ବୁଲାବୁଲି କଲେ । ଆମେ ଠିକ୍ କଲୁ ସେଇଠୁ ଫେରି ଗେଲିଙ୍ଗ ଫୁ ସହର ଭିତରେ ଘଣ୍ଟାଏ ବୁଲାବୁଲି କରି ପୁଣି ବଙ୍ଗାଇଗାଓଁ ଫେରିବୁ ।

କିନ୍ତୁ ଦୁର୍ଭାଗ୍ୟ । ଗାଡ଼ିଟା ସେଇଠି ଖରାପ ହୋଇଗଲା । ମୋଟେ ଷ୍ଟାର୍ଟ ହେଲାନି । ଡ୍ରାଇଭର ବିଚରା ଚେଷ୍ଟା ଚଳେଇ ଥାଏ । ପିଲାମାନେ ମଧ୍ୟ ପାଖରେ ଥିବା ବଣ ଓ ଝରଣା ପାଖେ ପାଖେ ଆବଶ୍ୟକ ନଥିଲେ ମଧ୍ୟ ଆଉଥରେ ବୁଲିବାକୁ ଗଲେ ।

ଆର୍ମିର ଜଣେ ଅଫିସର ଏତିକି ବେଳେ ପାଖ ତମ୍ବୁରୁ ବାହାରି ଆସି ମୋତେ ଇଂରାଜୀରେ ପଚାରିଲେ କେମିତି ଆପଣଙ୍କୁ ସାହାଯ୍ୟ କରିବି ?

ମୁଁ ତାଙ୍କୁ ସବୁ କଥା କହିଲି । ସେ କହିଲେ ମୋ ପାଖରେ ତ କୌଣସି ମିସ୍ତ୍ରୀ ନାହିଁ, କିମ୍ବା ଯନ୍ତ୍ରପାତି ମଧ୍ୟ ନାହିଁ, ତେବେ ଗୋଟିଏ କାମ କରିପାରିବି । ମୋର ମେନ୍ କେମ୍ପ୍‌କୁ ଖବର ପଠାଇ ଗୋଟିଏ ଗାଡ଼ି ମଗେଇ ଆପଣଙ୍କୁ ଗେଲିଙ୍ଗ ଫୁ ସହରରେ ଛାଡ଼ି ଦେଇପାରିବି । ମୁଁ କହିଲି ସେତିକି ମୋ ପାଇଁ ଯଥେଷ୍ଟ ହେବ । ପିଲାମାନଙ୍କୁ ଧରି ଏଠି ଖରାରେ ହଇରାଣ ହେବା ଅପେକ୍ଷା ସେଠାକୁ ଗଲେ ଅନ୍ୟ ବ୍ୟବସ୍ଥା କଥା ଚିନ୍ତା କରି ହେବ ।

ସେ ତାଙ୍କ ତମ୍ବୁ ଭିତରକୁ ମୋତେ ଡାକି ନେଲେ । ଓ୍ୱାକି ଟକି (**Walkie Talkie**)ରେ ସେ ତାଙ୍କର ମେନ୍ କେମ୍ପ୍‌କୁ ଖବର ପଠେଇଲେ । କିନ୍ତୁ ସେଠୁ ଗାଡ଼ି ଆସିବା ଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିଲା । ତେଣୁ ଆମେ ଗପ ଜମେଇଲୁ ।

ମୁଁ ପଚାରିଲି ଏ ଛୋଟିଆ ପୋଲଟି ଜଗିବାକୁ ଏତେ ଆର୍ମି କାହିଁକି ରଖାଯାଇଛି । ସେ କହିଲେ, କେବଳ ପୋଲଟିକୁ ଜଗିବାକୁ ଆମେ ରହିନୁ । ଆପଣ ଜାଣିଥିବେ ଏବେ ଭୁଟାନର କେତେକ ଲୋକ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରି ଦେଇଛନ୍ତି । ସେମାନେ ସବୁ ଏଇ ରାସ୍ତାରେ ମୁକ୍ତଭାବେ ଯିବା ଆସିବା କରନ୍ତି; ସେମାନେ ସବୁ ଏଠାରେ ଅନ୍ତର୍ଘାତ କାର୍ଯ୍ୟମାନ କରି ଭାରତ ଭିତରକୁ ପଳାନ୍ତି । ତେଣୁ ସେମାନଙ୍କୁ ରୋକିବା ଆମର କାମ । ତା ଛଡ଼ା ଏଇ ରାସ୍ତାରେ ନେପାଳ ଓ ଚୀନ ଆଡୁ ମାଦକ ଦ୍ରବ୍ୟ ମଧ୍ୟ ଭାରତ ଭିତର ଦେଇ ବାଂଲାଦେଶକୁ ଚୋରା ଚାଲାଣ ହୁଏ । ତାକୁ ମଧ୍ୟ ରୋକିବା ଆମର କାମ ।

ଏ ସବୁ କଥା ମୁଁ ପ୍ରାୟ ଖବର କାଗଜରେ ପଢ଼େ । ଭୁଟାନ ରାଜାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ ହେଲାଣି ପ୍ରାୟ ବର୍ଷେ ହେଲା । ସେମାନେ ରାଜତନ୍ତ୍ର ମୁର୍ଦ୍ଦାବାଦ । ପ୍ରଜାତନ୍ତ୍ର ହିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ତେଣୁ ରାଜା ମଧ୍ୟ ଏ ବିଦ୍ରୋହକୁ ଦମନ କରିବାକୁ ପ୍ରାଣପଣ ଚେଷ୍ଟା ଚଳେଇଛନ୍ତି । ବେଳେ ବେଳେ ରୟାଲ ଆର୍ମିର ନିର୍ଦ୍ଦୋଷ ଜନତା ଉପରେ "ଅମାନୁଷିକ ଅତ୍ୟାଚାର"ର ଖବର ମଧ୍ୟ ପ୍ରକାଶ ପାଏ ଏବଂ ଆଉ କେତେବେଳେ ଏହି ବିଦ୍ରୋହକୁ ଭାରତର ନେତାମାନେ ଉତ୍ସାହ ପ୍ରଦାନ କରୁଛନ୍ତି ବୋଲି ମଧ୍ୟ ପ୍ରକାଶ ପାଏ ।

ମୁଁ ଦେଖିଲି ମୋ ନିଜ ପ୍ରଶ୍ନ ହିଁ ମୋତେ ଅଡ଼ୁଆରେ ପକେଇ ଦେଇଛି । ମୁଁ ତେଣୁ ଆଉ କିଛି ସେ ବିଷୟରେ ଆଲୋଚନା ନକରି ତାଙ୍କୁ ତାଙ୍କ ଆର୍ମି କଥା ପଚାରିଲି ।

ସେ କହିଲେ ଆମ ସଂଖ୍ୟା ଅନେକ କମ୍ । ପ୍ରାୟ ପାଞ୍ଚ ହଜାର ? ଯାଏ ହେବ ।

ଗୋଟାଏ ଦେଶର ମୋଟ ସୈନ୍ୟ ସଂଖ୍ୟା ମାତ୍ର ପାଞ୍ଚ ହଜାର, ଅଜାଣତରେ ମୋ ଓଠରେ ଟିକିଏ ହସ ଉହାଳି ଆସିଲା । ଆମ CISFର ମୋଟ ସଂଖ୍ୟା ଏବେ ନବେହଜାର ପାଖାପାଖି ।

ସେ କହିଲେ, ଆମ ରାଜା ଏ ସଂଖ୍ୟା ମଧ୍ୟ ବଢ଼େଇବାକୁ ଚାହୁଁଛନ୍ତି । ରାଜା କହନ୍ତି ଆମ ପରି ଗ୍ରେଟ ରାଜ୍ୟ ପକ୍ଷେ ପାଞ୍ଚ ହଜାର ସୈନ୍ୟ ଅନେକ ବେଶୀ । ଆମ ରାଜା ମୋଟେ ଯୁଦ୍ଧାକାଂକ୍ଷୀ ନୁହନ୍ତି । ଆମର କାହା ସହିତ ଶତ୍ରୁତା ନାହିଁ । ଶତ୍ରୁତା କରି ଆମେ କେମିତି ଚଳିବୁ । ଆମର ତେଲ ଲୁଣ ଭାରତରୁ ଆସେ । ଲୁଗା ଆସେ ଚୀନ ଓ ଭାରତରୁ । ଚାଉଳ ଆସେ ବର୍ମାରୁ । କାହା ସହିତ ଶତ୍ରୁତା କରିବୁ । ପୁଣି ଭାରତରୁ ପେଟ୍ରୋଲ ଓ ବିଜୁଳି ନ ଆସିଲେ ଆମ ଘର ଅନ୍ଧାର ।

ମୁଁ କହିଲି ଆପଣଙ୍କର ବିମାନ ବାହିନୀ ?

ସେ ହସିଲେ ।

କହିଲେ ବିମାନ ବାହିନୀ ବା ନୌବାହିନୀର ପ୍ରଶ୍ନ ଉଠୁଚି କୋଉଠୁ ? ଏ ଯାଏ ଆମ ରାଜଧାନୀ ଥିମ୍ପୁକୁ ନୈମିତ୍ତିକ ବେସାମରିକ ବିମାନ ଚଳାଚଳ ମଧ୍ୟ ହୋଇନି । ହେବାର ସମ୍ଭାବନା ମଧ୍ୟ ନାହିଁ ।

ତାଙ୍କ ଶିଳ୍ପକଥା ପଚାରିଲି । ସେ କହିଲେ, ଆମର ଆଉ ଇଣ୍ଡଷ୍ଟ୍ରି କଅଣ ? ତେବେ କିଛି ପଞ୍ଚାୟତ ଇଣ୍ଡଷ୍ଟ୍ରୀ ଅଛି । ବେଶୀ ଭାଗ କୃଷିଭିତ୍ତିକ । ଭାରତରେ ସବୁ ଜାଗାରେ ଆମର ଫଳରସ, ଜାମ, ଜେଲି ବିକ୍ରି ହେଉଛି । ତେଣୁ ସେଇଟା ଆମ ଇଣ୍ଡଷ୍ଟ୍ରିଜ୍ ବୋଲି ଧରି ନଅନ୍ତୁ ।

ଜଣେ ସୈନିକ ସେତିକିବେଳେ ଆସି ପହଞ୍ଚିଗଲା । କେପଟେନ ସାହେବଙ୍କ ସାମନାରେ ସେ ଠିଆ ହୋଇ କାନ୍ଧରେ ଧରିଥିବା ଗୋଟିଏ ଝୁଡ଼ିରୁ ଅଜାଡ଼ି ଦେଲା ପ୍ରାୟ ୪୦/୫୦ଟା କମଳା ଲେମ୍ବୁ । ସଦ୍ୟ ଜଙ୍ଗଲ ଭିତରୁ ସେ ତୋଳି ଆଣିଛି । ସେ ଅନ୍ୟମାନଙ୍କ ସହ ପେଟ୍ରୋଲିଂ କରିବାକୁ ଯାଇଥିଲା । କେପଟେନ ସାହେବ ଗୋଟିଏ ପ୍ଲେଟ୍‌ରେ ଚାରିଟା କମଳା ମୋତେ ଦେଲେ ଏବଂ ନିଜେ ଗୋଟିଏ ଉଠେଇଲେ । ମୋତେ କହିଲେ ଖାଆନ୍ତୁ । ମୁଁ ଦେଖିଲି ସେଗୁଡ଼ାକ ଏକଦମ ନାଲି ରଙ୍ଗ, ଖଟା ଲାଗିବ । ମୁଁ କହିଲି କଞ୍ଚାଗୁଡ଼ିକ ଖାଇଲେ କେମିତି ଲାଗିବ ?

ମୁଁ ଭାବିଲି ଆରେ, ଏତିକି ମିଠା ! ମୁଁ ବିଶ୍ୱାସ କରି ପାରିଲିନି । ସେ କହିଲେ ସବୁ ପ୍ରକାର ଫଳ ଏ ଜଙ୍ଗଲରେ ଭରପୁର । ମୁଁ ଦେଖିଲି ତାଙ୍କ ଟ୍ରେରେ ଅନେକ ପ୍ରକାର ଫଳ ରହିଛି । କେବଳ ଅଙ୍ଗୁରକୁ ଛାଡ଼ିଦେଲେ ଆଉ ସବୁପ୍ରକାର ଫଳ ଏଠି ମିଳେ । ଫଳ ଭର୍ତ୍ତି ଅଁଳା ଗଛ, ଅମ୍ବରୁଟ ଗଛ ଇତ୍ୟାଦି ଦେଖିଲେ ପେଟ ପୂରିଯାଏ । ଜଙ୍ଗଲ ଭିତରେ ଏ ଅମିଳିକ ଫଳ ଗୁଡ଼ିକ କାଉ କୋଇଲି ଖାଉ ଥିବାର ଦେଖିଲେ କିଏ ଆଶ୍ଚର୍ଯ୍ୟ ନ ହେବ !

ମାରୁତି ଭ୍ୟାନ୍ ଟିଏ ଆସି ପହଞ୍ଚିଲା ।

ସେ କହିଲେ ଚାଲନ୍ତୁ, ମୁଁ ସେଠି ଆପଣଙ୍କୁ ଛାଡ଼ି ଦେଇ ଆସିବି । ପିଲାମାନେ ସେତେବେଳକୁ ବୁଲି ବୁଲି ଥକି ପଡ଼ିଲେଣି । ଆମ ଗାଡ଼ି ସେ ଯାଏଁ ଠିକ୍ ହୋଇନଥାଏ । ଆଣା ଛାଡ଼ି ଆମେ ଆସି ମାରୁତି ଭ୍ୟାନ୍‌ରେ ବସିଲୁ । ଦେଖିଲି ଭ୍ୟାନ୍‌ଟା ଭଡ଼ାରେ ଆଣି ଆର୍ମି ବ୍ୟବହାର କରୁଛି । ରେଜିଷ୍ଟ୍ରେସନ ନମ୍ବରରୁ ଜାଣିଲି ଭ୍ୟାନ୍‌ଟା ଭାରତର ଅର୍ଥାତ୍ ଆସାମର । ଅଫିସର ଜଣକ କହିଲେ ଆମେ ଏଥିରେ ମଧ୍ୟ ଖର୍ଚ୍ଚ କମେଇବାକୁ ଚାହୁଁଛୁ । ଆର୍ମିର ନିଜସ୍ୱ ଗାଡ଼ି ଅନେକ କମ୍ ।

ଆମେ ଯାଇ ଶେଲଙ୍ଗ ଫୁ ଥାନାରେ ପହଞ୍ଚିଲୁ । ରାସ୍ତାରେ କେପଟେନ ସାହେବ ମୋତେ କହିଲେ ଥାନା ପାର୍ଶ୍ୱରେ ଅନେକ ସମୟରେ ଗାଡ଼ି ଥାଏ । ସେଠୁ ଆପଣ ବଙ୍ଗାଇଗାଓଁ ଚାଲି ଯାଇ ପାରିବେ କିମ୍ବା ତାଙ୍କ ସାହାଯ୍ୟରେ ଜଣେ ମିସ୍ତ୍ରୀକୁ ଆଣି ଆପଣଙ୍କ ଗାଡ଼ିକୁ ସଜାଡ଼ି ହେବ ।

—o—

# ଗେଲଙ୍ଗଫୁର ପୁଲିସ

ଗେଲଙ୍ଗ ଫୁ ଥାନା ବେଶ୍ ବଡ଼ । ଥାନା ସାମନାରେ ଅନେକ ଗୁଡ଼ାଏ ଗାଡ଼ି । ଅନେକ ପୋଲିସ ମଧ୍ୟ । ସେମାନଙ୍କୁ ଦେଖିଲେ କାହାରି ବୟସ ୨୦ରୁ ବେଶୀ ହେବ ବୋଲି ମନେ ହେବନି । ଯେମିତି ସେମାନଙ୍କ ଚେହେରା ଓ ଆକୃତି ସେମିତି । ତମ୍ବା ପଟା ପରି ଗୋରା ଦେହକୁ ନିଶ ଦାଢ଼ି ମୋଟେ ନଥାଏ । ନେପାଳୀ ଓ ଓ ଭୂଟାନୀଙ୍କ ମଧ୍ୟରେ ପାର୍ଥକ୍ୟ ଏତିକି ଯେ ନେପାଳୀ ମାନଙ୍କ ମୁହଁ ସାଧାରଣତଃ ଗୋଲ୍ କିନ୍ତୁ ଭୂଟାନୀଙ୍କମାନଙ୍କ ମୁହଁ ଗୋଲ ନୁହେଁ, ସରୁ ତଥା ଲମ୍ବାଳିଆ । ତେଣୁ ବୟସ ମୋଟେ ଜଣାପଡ଼େନି । ଥାନା ଅଫିସର ଏବଂ ଆର୍ମିର କେପଟେନ ଦୁହିଁଙ୍କୁ ଦେଖିଲେ ଦୁଇ ଭାଇ ପରି ମନେହେବ ।

ଆମ ଭାରତସ୍ଥ ଥାନା ଓ ଭୂଟାନର ସେ ଥାନା ଭିତରେ ଗୋଟାଏ ତୁଳନାତ୍ମକ ଚିତ୍ର ମୁଁ ମନେ ମନେ ଅଙ୍କୁଥିଲି । ପ୍ରାୟ ସବୁ ସମାନ । ରାଇଫଲ ରେକ, ହାତକଡ଼ି ଓ ତାର ଦଉଡ଼ି ମେଲ ଓ ଫିମେଲ ହାଜତ ଓ ଅନ୍ୟାନ୍ୟ ଆସବାବ ପତ୍ର ଇତ୍ୟାଦିରେ ପ୍ରାୟ ଫରକ ନାହିଁ । କେବଳ ଗୋଟିଏ ଫରକ ଦେଖିଲି, ଆମ ଥାନା ମାନଙ୍କରେ ଜାତୀୟ ନେତା ମାନଙ୍କର ଫଟୋ ଥାଏ । ସେଠି କିନ୍ତୁ ଭୂଟାନ ରାଜାଙ୍କର ବିରାଟ ଫଟୋଟିଏ ସମସ୍ତଙ୍କ ନଜରରେ ପଡ଼ିଲା ଭଳି ସ୍ଥାନରେ ରଖାଯାଇଛି ଏବଂ ତା ଉପରେ ମୋଟା ଫୁଲ ମାଳଟିଏ ମଧ୍ୟ ରଖା ଯାଇଛି । ଫୁଲ ମାଳର ସତେଜତାରୁ ଜଣାଯାଏ ସେଇ ଦିନ ହିଁ ସେଇଟା ରଖାଯାଇଛି । ଅର୍ଥାତ୍ ଫୁଲମାଳ ହୁଏତ ପ୍ରତିଦିନ ବଦଳ କରାଯାଉଛି । କିନ୍ତୁ ଆମ ଥାନା ବା ଅଫିସ ମାନଙ୍କରେ ଯୋଉ ଜାତୀୟ ନେତାଙ୍କର ଫଟୋ ଥାଏ ସେଥିରେ ବୁଢ଼ୀଆଣୀ କେବଳ ଦୈନିକ ମାଳା ପିନ୍ଧାଏ ।

ଅଉ ଗୋଟିଏ ଦୃଶ୍ୟ ଦେଖିଲି ''ରୋଗ୍ସ ଗେଲେରୀ''ରେ । ଆମ ଥାନା ମାନଙ୍କରେ ଥିବା ରୋଗସ୍ ଗେଲେରୀରେ ଥାଏ ଚୋର, ଡକେଇତ, ପକେଟମାର ପ୍ରଭୃତି ଦାଗୀ ମାନଙ୍କର ଫଟୋ । ବିହାର, ଉତ୍ତରପ୍ରଦେଶ ଓ ମଧ୍ୟପ୍ରଦେଶର କେତେକ ଥାନାରେ ''ରୋଗସ୍ ଗେଲେରୀରେ ଅନେକ ସମୟରେ ସେଠାକାର ନେତାମାନଙ୍କର ଫଟୋ ମଧ୍ୟ ଥାଏ । ସେଠାକାର ପୋଲିସ ମାନେ ଖୁବ ଚତୁର । ଯେତେବେଳେ ଏଇ ଦାଗୀମାନେ ଭୋଟ ଜିତି ଲୋକ ପ୍ରତିନିଧି ହୋଇ ଯାଆନ୍ତି

ସେତେବେଳେ ଥାନା ଅଫିସର ତାଙ୍କ ଫଟୋଟିକୁ ସେଠାରୁ ଗେଲେରୀରୁ କାଢ଼ିନେଇ ଅନ୍ୟ ସ୍ଥାନରେ ଲୁଚେଇ ରଖନ୍ତି । କେହି କେହି ନିଜ ଟେବୁଲ କାଚ ତଳେ ମଧ୍ୟ ରଖି ଦିଅନ୍ତି । ପୁଣି ସେତେବେଳେ ସେ ନେତା ଜଣକ ଭୋଟରେ ହାରି ଯାଆନ୍ତି ବା କ୍ଷମତାର ପରିସର ଭିତରୁ ବାହାରି ଆସନ୍ତି ସେତେବେଳେ ଫଟୋଟି ପୁଣି ତାର ନିଜ ସ୍ଥାନକୁ ଫେରି ଆସେ ।

ଥାନା ଅଫିସରଙ୍କୁ ମୁଁ ସେଠାକାର ଅପରାଧ ଓ ଅପରାଧୀଙ୍କ କଥା ପଚାରିଲି । ସେ କହିଲେ ବର୍ଷକୁ ହାରାହାରି ୪୦ / ୫୦ଟା ଅପରାଧ ହୁଏ, ବେଶୀ ଭାଗ ଗାଈ ବା ଛେଳି ଚୋରି । କିଛି ପରିମାଣରେ ଫସଲ ଚୋରି ମଧ୍ୟ ହୁଏ । ଟଙ୍କା ପଇସା କିମ୍ବା ଗହଣା ବା ଅନ୍ୟାନ୍ୟ ମୂଲ୍ୟବାନ୍ ଜିନିଷର ଚୋରି ପ୍ରାୟ ନଥାଏ । ତେଣୁ ପାରମ୍ପରିକ ଅପରାଧ ଏଠି ଅନେକ କମ୍ ।

ଏ ଲୋକଙ୍କ ମନରେ ଅପରାଧପ୍ରବଣତା କାହିଁକି କମ୍ ଏବଂ ଆମ ଲୋକଙ୍କ ମନରେ ଅପରାଧପ୍ରବଣତା କାହିଁକି ବେଶୀ ସେ କଥା ସମାଜ ବିଜ୍ଞାନୀ-ମାନେ କହିବେ । ପାରମ୍ପରିକ ଅପରାଧରୁ ଏବେ ଆମେ ଆଉ ଗୋଟିଏ ପାହାଚ ଆଗକୁ ଆସିଲେଣି । ଆମେ ଏବେ White Collar Crimeର ଯୁଗରେ ପହଞ୍ଚିଗଲୁଣି ।

ସେମାନେ କିନ୍ତୁ ଯୋଉଠି ଥିଲେ ସେଇଠି ଅଛନ୍ତି । ଆମେ ଆଗେଇଛୁ କି ସେମାନେ ପଛେଇଛନ୍ତି ତାହା ଚିନ୍ତା କରିବାର କଥା ।

ସେ ଦିନ କିନ୍ତୁ ଗେଲେଙ୍ଗ ଫୁ ଥାନାର ଅଫିସର ଏବଂ ଅନ୍ୟାନ୍ୟ କର୍ମଚାରୀଙ୍କ ବ୍ୟବହାର ମୋତେ ମୁଗ୍ଧ କରିଥିଲା । ଭାରତର ବହୁ ରାଜ୍ୟ ମୁଁ ବୁଲିଛି ଏବଂ ସବୁ ରାଜ୍ୟର ପୋଲିସ କର୍ମଚାରୀଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ମୁଁ ମିଶିବାର ସୁଯୋଗ ପାଇଛି । କିନ୍ତୁ ଗେଲେଙ୍ଗ ଫୁ ଥାନାର ଥାନା ଅଫିସର ସେଦିନ ଦ୍ୱିପହରଟାରେ ଖାଇଲା ପରେ ବିଶ୍ରାମ ନ ନେଇ ବିଛଣାରୁ ଉଠିଆସି ଯେମିତି ଭାବରେ ମୋତେ ସାହାଯ୍ୟ କରିବାକୁ ଚେଷ୍ଟା କଲେ ତାହା ଥିଲା ମୋ ପକ୍ଷେ ଅନନ୍ୟ ।

ସାଧାରଣ ଭାବେ ମୁଁ ଦେଖିଲି ଥାନାର ପୋଲିସମାନେ ବେଶ୍ ଭଦ୍ର ଏବଂ ନମ୍ର । ସେମାନଙ୍କର ପୋଷାକରୁ ଜଣାପଡ଼େ ସେମାନେ ଖୁବ୍ ସ୍ମାର୍ଟ । ଏସବୁ ଦିଗରୁ ସେମାନଙ୍କୁ ତାମିଲନାଡ଼ୁ ପୋଲିସ ସହିତ ତୁଳନା କରାଯାଇ ପାରେ । ତାମିଲନାଡ଼ୁ ପୋଲିସ୍‌ର ସ୍ମାର୍ଟନେସ ଅତୁଳନୀୟ । ଠିକ୍ ସେମିତି ସେମାନଙ୍କର ବ୍ୟବହାର ଓ ଜନ ସହଯୋଗ । ଦରକାର ବେଳେ ସେଠି ପୋଲିସ ଲୋକଙ୍କର ପ୍ରକୃତ ବନ୍ଧୁ ହିସାବରେ କାମ କରେ । ଉଦାହରଣର ଆବଶ୍ୟକତା ନାହିଁ ।

କାରଣ ମୁଁ ତାମିଲନାଡୁରେ ଥିଲାବେଳେ ଏହି ଦ୍ରବ୍ୟରେ ବହୁବାର, ବିଭିନ୍ନ ପ୍ରକାର ପ୍ରବନ୍ଧରେ ଉଲ୍ଲେଖ କରିଚି ।

ଗାଡ଼ି ସଜାଡ଼ିବାକୁ ଥାନା ଅଫିସର ଏବଂ ଆର୍ମିର କେପଟେନଙ୍କ ସହିତ ମିଶି ମୁଁ ଗଲି ଗେଲେଙ୍ଗ ଫୁ ସହର ଭିତରକୁ । କିନ୍ତୁ ଦୁର୍ଭାଗ୍ୟକୁ ସେଦିନ ରବିବାର ଥିବାରୁ କୌଣସି ଗୋଟିଏ ବୋଲି ଦୋକାନ ଖୋଲି ନଥିଲା । ପିଲାମାନେ ଗୃ ଜଳଖିଆ ପେଟେ ଖାଇ ସେଇ ଥାନାରେ ବିଶ୍ରାମ ନେଲେ ।

ସହରଟି ଦେଖିଲି, ଅତ୍ୟନ୍ତ ଶ୍ରେଷ୍ଟ । ସିଭିଲ ଟାଉନ ହେଲେ ମଧ୍ୟ ମ୍ନେନତ । ରାସ୍ତା ଗୁଡ଼ିକ ପରିଷ୍କାର ଏବଂ ପ୍ରଶସ୍ତ । ଅଳିଆ ଅଦରକାର ସ୍ଥାନ ସ୍ୱତନ୍ତ୍ର ଭାବରେ ନିର୍ମିତ । ରାସ୍ତା ଉପରକୁ ମଇଳା ପାଣି ମାଡ଼ି ଆସୁଥିବା କଦର୍ଯ୍ୟ ଦୃଶ୍ୟ ମୁଁ ଦେଖିଲିନି । ଘର ଗୁଡ଼ିକ କେତେକାଂଶରେ ଗମ୍ବୁଜାକାର । ତଳମହଲାରେ ଦୋକାନ ଓ ଉପର ମହଲାରେ ଘର । ଶ୍ରେଷ୍ଟ ସହରଟିରେ ଅ.ଠ ଦଶଟି ବିଦେଶୀ ମଦ ଦୋକାନ ଭାରତ ପରି ସେଠ ମଧ୍ୟ ବିଦେଶୀ ମଦ ତିଆରି ହୁଏ । ଶୁଣିଚି କୁଆଡ଼େ ଭୂଟାନରେ ତିଆରି ବିଦେଶୀ ମଦ ଭାରତ ତିଆରି ବିଦେଶୀ ମଦ ଅପେକ୍ଷା ଅଧିକ ସୁସ୍ୱାଦୁ । ଦ ମ୍ ମଧ୍ୟ ଅପେକ୍ଷାକୃତ କମ୍ । ତାର କାରଣ ସେଠ ପ୍ରଚୁର ପରିମାଣରେ ଫଳ ମିଳେ ।

ବୁଲୁ ବୁଲୁ ଦେଖିଲି ଲାଲ ଟକ ଟକ ଦେହର ପାଲିସ କରା ତମ୍ବା ପଟାର ଚମରେ କୁଞ୍ଚ ପଡ଼ିଛି ୬୦/୭୦ ବର୍ଷର ବୁଢ଼ୀଟିଏ କମଳା ବିକୁଥିଲା । ପଚାରିଲି ଦାମ କେତେ ?

ସେ ତା'ର ଶ୍ରେଷ୍ଟ ଶ୍ରେଷ୍ଟ ଆଖିରେ ମୋତେ ଅନେଇ ଦୁଇ ହାତର ଆଙ୍ଗୁଳି ସବୁକୁ ମେଲି ଧରି ମୋତେ କହିଲା ଟଙ୍କାରେ ଦଶଟା ? ଭାବିଲି ସବୁତକ ନେଇଯିବି କି ?

କିନ୍ତୁ ହାୟ ! ମୋ. ଗାଡ଼ିଟାତ ଏ ଯାଏ ଠିକ୍ ହୋଇନି ।

ଅନେକ କଷ୍ଟରେ ଆମେ ସେଦିନ ଗାଡ଼ି ଠିକ୍ କରି ବଙ୍ଗାଇଗାଓଁ ଫେରିଲା ବେଳକୁ ଦିନର ସୂର୍ଯ୍ୟ ଅନେକ ତଳକୁ ଖସି ଆସିଥିଲେ ।

- ୦ —

# ଏବେ ନାଗାଲାଣ୍ଡ

ଅସମରୁ ନାଗାଲାଣ୍ଡ ଯାତ୍ରା ମୋର ବରାବର ମନେ ରହିବ । କାରଣ ଏହିପଲକ୍ଷେ ଟୁଲି ମୁଁ ଅନେକ ଥର ଯାଇଛି । ରେଳରେ ଯାଇଛି ଏବଂ କାର୍‌ରେ ମଧ୍ୟ ଯାଇଛି । କିନ୍ତୁ ଯେତେଥର ଯାଇଛି ଟୁଲି ଓ ତା'ର ଆଖପାଖର ବଣ ଜଙ୍ଗଲ ଘେରା ପାହାଡ଼, ତାର ଘଞ୍ଚ ଅରଣ୍ୟ, ତାର ଗାଁ ଗଣ୍ଡା, ମଣିଷ, ପଶୁ, ପକ୍ଷୀ ଏ ସମସ୍ତଙ୍କ ପ୍ରତି ମୋର କେମିତି ଗୋଟାଏ ପୁଣି ଥରେ ଦେଖିବାର ଅଦମ୍ୟ ଲୋଭ ସମ୍ବରଣ କରିପାରିନି । ଯେତେଥର ମୁଁ ଯାଇଛି ସେତିକି ଆନନ୍ଦିତ ହୋଇଛି, ସେତିକି ମୁଁ ଅଧିକ ପ୍ରଲୋଭିତ ହୋଇଛି । ସେତିକି ବିମୁଗ୍ଧ ବିହ୍ୱଳିତ ଆଖିରେ ମୁଁ ସେମାନଙ୍କୁ ଦେଖିଛି ।

ସେ ଦିନ ଥିଲା ଗୋଟାଏ କ୍ଲାନ୍ତ ଅପରାହ୍ଣ । ଆମଗୁରି ଷ୍ଟେସନରେ ମୁଁ ଓହ୍ଲାଇଲି ବେଳକୁ ଟୁଲିରେ ଆସିଷ୍ଟାଣ୍ଟ କମାଣ୍ଡାଣ୍ଟ ବିନୋଦ ଥାପ୍‌ପା ମୋତେ ଅପେକ୍ଷା କରି ଥାଆନ୍ତି । ତାଙ୍କ ସହିତ ମୋର ପ୍ରଥମ ପରିଚୟ । ସାମାନ୍ୟ କଥାବାର୍ତ୍ତା ପରେ ଆମେ ଗୋଟିଏ ମାରୁତି ଭେନ୍‌ରେ ଆଗେଇଲୁ ଟୁଲି ଆଡ଼କୁ । ଆସାମର ଆମଗୁରି ଷ୍ଟେସନଟା ଠିକ୍ ନାଗାଲାଣ୍ଡ ଓ ଆସାମ ସୀମାରେ । ଷ୍ଟେସନରୁ ମାତ୍ର ତିନି ଚାରି କିଲୋମିଟର ଗଲେ ନାଗାଲାଣ୍ଡର ସୀମା ପଡ଼େ । ସେଇଠି ଆମ ଗାଡ଼ି ଅଟକିଲା । ଆଗରେ ଚେକ୍ ଗେଟ୍ । ନିୟମ ଅନୁସାରେ ଫରେନର ମାନେ ନାଗାଲାଣ୍ଡ ଭିତରକୁ ବିନା ପରମିଟରେ ପଶିବା ନିଷେଧ ।

ଆମ ଗାଡ଼ି ପାଇଁ ସେ ସବୁର ଆବଶ୍ୟକତା ନଥିଲା । ତେଣୁ ପୋଲିସ ଉପବାରକୁ ଟେକି ଦେଲା । ଆମେ ଆଗେଇଲୁ । ରାସ୍ତାର ଦୁଇ ଧାରରେ ମାଇଲ ମାଇଲ ବ୍ୟାପି ଚା' ବଗିଚା । ତାରି ଭିତରେ ପାହାଡ଼ କାଟି ଆରମ୍ଭ ହୋଇଛି ନାଗାଲାଣ୍ଡର ପ୍ରଥମ ରେଳ ରାସ୍ତା । ଆମଗୁରି ଷ୍ଟେସନରୁ ଟୁଲି ଯାଏ ।

ସ୍ୱାଧୀନତାର ୪୪ ବର୍ଷ ପରେ ଏବେ ଆରମ୍ଭ ହୋଇଛି ପ୍ରଥମ ରେଳ ରାସ୍ତା । ନିର୍ମାଣ କେବେ ସରିବ ଜଣା ନାହିଁ । କେବେ ସେମାନେ ରେଳ ଗାଡ଼ି ଦେଖିବେ ଏବଂ କେବେ ଚଢ଼ିବେ ଭଗବାନଙ୍କୁ ଜଣା । ସେମାନେ ଅପେକ୍ଷା କରିଚାଲିଛନ୍ତି, ସ୍ୱାଧୀନତାର ପ୍ରଥମ ସ୍ୱାଦ ଚାଖିବା ପାଇଁ ।

ଆମେ ଆଗେଇଲୁ । ଟୁଲୀ ନାଗାଲଣ୍ଡର ପ୍ରଥମ ସହର ଯୋଉଠି କେନ୍ଦ୍ର ସରକାରଙ୍କର ଏକମାତ୍ର କାରଖାନା ସ୍ଥାପିତ ହୋଇ ପାରିଛି ।

ଆମ ଗାଡ଼ି ପାହାଡ଼ ଉପରକୁ ଚକ୍କର କାଟି ଉଠିଲା । ବିନୋଦବାବୁ କହିଲେ ଏଇ ପାହାଡ଼ ଉପରେ ହିଁ ଗେଷ୍ଟ ହାଉସ । ଆମେ ଗେଷ୍ଟ ହାଉସ୍‌ରେ ପହଞ୍ଚିଲା ବେଳକୁ ଅପରାହ୍ଣ ଗୁରଟା । ଗାଡ଼ିରୁ ଓହ୍ଲେଇ ମୁଁ ଗେଷ୍ଟ୍ ହାଉସ୍ ବାରଣ୍ଡାରେ ଠିଆ ହୋଇ ଗ୍ୱର ଅ.ଡ଼କୁ ଥରେ ଦେଖି ନେଲି ।

ଆଡ଼ି ପାଇବା ଯାଏ ପାହାଡ଼, ଖାଲି ପାହାଡ଼ । ଅନେକ ଦୂରରେ ମେଘ ଓ ପାହାଡ଼ ମିଶି ଯାଇଛନ୍ତି । ସବୁ ସୌନ୍ଦର୍ଯ୍ୟ ଯେମିତି ଏଇଠ ଠୁଳ ହୋଇଛି । ପାହାଡ଼ ତଳେ ବଡ଼ଟ କାଗଜ କଳଟା ଶୋଇ ଶୋଇ ହାଇ ମାରୁଛି । ସବୁଠି ନୀରବତା କେବଳ । ପାହାଡ଼ର ବଣ ଭିତରେ ଦୁଇ ଗୁରଟା ପକ୍ଷୀର କୋଳାହଳ ସେମାନେ ଘରକୁ ଫେରୁଛନ୍ତି ।

ବିନୋଦବାବୁ ମୋତେ ଡାଗିଦ୍ କରେଇ ଦେଲେ, କହିଲେ ଆପଣ ଆଗ ଟିକିଏ ଗ୍ୱ' ପିଇ ବିଶ୍ରାମ ନିଅନ୍ତୁ । ଦେଖାଦେଖି କାମ ପରେ ।

ଟୁଲୀ ଗୋଟିଏ ଗ୍ରେଟ ସହର । କାଗଜ କଳ ପାଇଁ ପ୍ରାଧାନ୍ୟ ବଢ଼ି ଯାଇଛି । ପାହାଡ଼ ତଳେ ଗାଁଓ ସହର ମିଶି ଯାଇଛନ୍ତି । ପାହାଡ଼ ଉପରେ କାଗଜ କଳର ଟାଉନସିପ । କାଗଜ କଳରେ ପ୍ରାୟ ୧୬ଶ ଲୋକ କାମ କରନ୍ତି । ଅଧିକାଂଶ ନାଗା । ବେଶ୍ କିଛି ଭାଗ ନାଗା ରମଣୀ ମଧ୍ୟ ସେଠି କାମ କରନ୍ତି ।

ଆଉ ଏଇ ସେଇ ଗେଷ୍ଟ୍ ହାଉସ୍ । ଯା' କଥା ତ ମୋର ଜୀବନଯାକ ମନେ ରହିବ । ଏଇ ଗେଷ୍ଟ ହାଉସ୍‌ରେ ମୁଁ ମୋ ଜୀବନର ପ୍ରଥମ ଭୂମିକମ୍ପ ଦେଖିବାର ସୁଯୋଗ ପାଇଥିଲି । ସେ ଅପୂର୍ବ ଅନୁଭୂତିକୁ ମୁଁ ଅତ୍ୟନ୍ତ ସାଇତ ସାରିଛି । ତେଣୁ ତାକୁ ଆଉ ଥରେ ଏଠି ଦୋହରାଉ ନାହିଁ ।

କେବଳ ଏତିକି କହିବ । ଭୂମିକମ୍ପର ନା ଶୁଣିଲେ ଅନ୍ୟମାନଙ୍କର ହୃତ୍‌କମ୍ପ ଜାତ ହେଉଥିଲା ବେଳେ ମୁଁ ତାକୁ ସ୍ପର୍ଶ କରିଛି ଅତି ନିବିଡ଼ ଭାବେ । ତାକୁ ଅନୁଭବ କରିଛି ଅତି ଅନ୍ତରଙ୍ଗ ଭାବେ ।

—o—

# ସ୍ୱପନ ଆଓ ଓ ନାଗା ବିଦ୍ରୋହ

ସେଦିନ ବିନୋଦ ବାବୁ ମୋତେ ସ୍ୱପନ ଆଓଙ୍କ ସହିତ ପରିଚୟ କରାଇ ଦେଲେ । ସେ କହିଲେ, ଏ ଆମର ଜଣେ ସବଇନସପେକ୍ଟର । ଏଠାକାର ସ୍ଥାନୀୟ ଲୋକ । ଆସନ୍ତା କାଲି ସ୍ୱପନ ବାବୁ ଆପଣଙ୍କୁ ନେଇ ପେପର ମିଲ ଏବଂ ଆଖପାଖ ଅଞ୍ଚଳ ବୁଲେଇ ଆଣିବେ ।

ପରଦିନ ସକାଳ ୯ଟା ବେଳକୁ ସ୍ୱପନ ବାବୁ ଆସି ପହଞ୍ଚିଲେ । ମୁଁ ସେତେବେଳକୁ ଜଳଖିଆ ଯାଇ ବାହାରିବାକୁ ପ୍ରସ୍ତୁତ ହେଉଥାଏ । କେବଳ ଚା ଟା ବାକିଥାଏ । ମୁଁ ତେଣୁ ବୟକୁ ଦୁଇ କପ୍ ଚା ଆଣିବାକୁ କହିଲି । ସ୍ୱପନ ବାବୁ ମନା କଲେ, କହିଲେ ମୁଁ ଚା ଛାଡ଼ି ଦେଇଛି ।

ଚା ଛାଡ଼ି ଦେଇଛନ୍ତି ? ଚା'କୁ କଅଣ କେହି କେବେ ଛାଡ଼ିପାରେ ? କାହିଁକି କଅଣ ହେଲା ? ହଠାତ୍ ଚା ଉପରେ ଏତେ ଅଭିମାନ କାହିଁକି ? କହିଲି, ଚା ସିଗାରେଟ ଓ ଆମେ ଠିକ ସ୍ୱାମୀ ସ୍ତ୍ରୀ ସମ୍ପର୍କ ପରି । ଦିନରେ ପାଞ୍ଚଥର କଥା କଟାକଟି ହେଲାପରେ ସାତଥର ଆଡ଼ିଭୁଷା ହେଲା ପରେ ସନ୍ଧ୍ୟା ହେଲା ବେଳକୁ ସବୁ ଏକାକାର ହୋଇ ଯାଏ । ସେ ହସିଲେ ।

ମୁଁ କହିଲି, ଶକ୍ତ ବେମାର ପଡ଼ିଥିଲେ କି ?

ସେ କହିଲେ, ନା, ମୋ ଜୀବନରେ ବେମାରି କଅଣ ଏ ଯାଏ ମୁଁ ଜାଣିନି । ସେ ସବୁଠାରୁ ମୁଁ ଅନେକ ଦୂରରେ । ତେବେ ମୋ କଥାତ ଆପଣ ଜାଣି ନ ଥିବେ । ଜାଣିବାର ଅବକାଶ ମଧ୍ୟ ନଥିବ ।

ମୁଁ ଆଶ୍ଚର୍ଯ୍ୟ ହେଲି ।

ସେ କହିଲେ ମୁଁ ଦୀର୍ଘ ୨୦ ବର୍ଷ କାଳ ଅଣ୍ଡରଗ୍ରାଉଣ୍ଡ ଥିଲି । ୨୦ ବର୍ଷ କାଳ ମୁଁ ନାଗା ବିଦ୍ରୋହୀମାନଙ୍କ ସହିତ ମିଶି କାମ କରିଛି । ବହୁ ଅନ୍ତର୍ଘାତ କାମ ମଧ୍ୟ କରିଚି । ବହୁ ପୋଲିସ ଓ ଆର୍ମି ଅଫିସରଙ୍କୁ ମଧ୍ୟ ଏଇ ହାତରେ ଗୁଳି କରିଚି । ଏଇ ହାତରେ ମୁଁ ଅନେକ କାମ କରିଚି ସାର୍ । ସେ ସବୁ ଶୁଣିଲେ ଆପଣ ମଧ୍ୟ ଭୟ କରିବେ । ଏଇ ଦେଖନ୍ତୁ ମୋ ଦେହ ଟାଙ୍କୁର ଉଠୁଚି ।

ମୋ ହାତର ଚା କପଟା ମନକୁ ମନ ଓଠ ତଳକୁ ଖସି ଆସିଲା । ମୋର ରକ୍ତ ଥଣ୍ଡା ହୋଇ ଆସୁଚି ବୋଲି ମତେ ଜଣାଗଲା । ଏକକାଳୀନ ନାଗାମାନଙ୍କର ଦୁର୍ଦ୍ଧର୍ଷ ବୀର ଅଜି C.I.S.F.ର ସବ୍‌ଇନସପେକ୍ଟର । ମୁଁ ସ୍ୱପ୍ନ ଦେଖୁନି ତ ?

ସ୍ୱପନ ବାବୁଙ୍କ ଓଠରେ ସେମିତି ଚେନାଏ ହସ ଝୁଲି ପଡ଼ିଥିଲା ।

ସେ କଥା ଯୋଡ଼ି କହିଲେ, ଦୀର୍ଘ ୧୦ ବର୍ଷ କାଳ ଅଣ୍ଡରଗ୍ରାଉଣ୍ଡ ରହିବା ଭିତରେ ମୋର ଖିଆପିଆରେ ଅନେକ ଗୋଳମାଳ ହେଲା । ଫଳରେ ମୋର ପେଟ ଗୋଳମାଳ ଆରମ୍ଭ ହେଲା ।

କିନ୍ତୁ ଆପଣ C. I. S. F.କୁ କେମିତି ଆସିଲେ ? ମୁଁ ପଚାରିଲି ଆଶ୍ଚର୍ଯ୍ୟ ହୋଇ ।

ସରକାରଙ୍କ ସହିତ ଆମର ଯେତେବେଳେ ସନ୍ଧି ହେଲା ସେତେବେଳେ ଯୋଉ ଚୁକ୍ତି ହୋଇଥିଲା ସେଇ ଚୁକ୍ତି ଅନୁଯାରେ ଆମ ଭିତରୁ କେତେ ଜଣଙ୍କୁ ଚାକିରି ଦିଆଗଲା । ଆମର ଅଭିଯାନ ପୁନର୍ବାସ ସରକାର ହାତକୁ ନେଲେ ।

ମୋର ମନେ ପଡ଼ିଲା ଅନେକ ଦିନର କଥା । ସେତେବେଳେ ନାଗା ନେତା ଡକ୍ଟର ଫିଜୋ ପ୍ରଭୃତି କେତେ ଜଣଙ୍କ ନେତୃତ୍ୱରେ ନାଗାଲାଣ୍ଡରେ ସଶସ୍ତ୍ର ବିପ୍ଳବ ଆରମ୍ଭ ହୋଇଥିଲା । ସେତେବେଳେ ଭାରତ ସରକାରଙ୍କ ଧାରଣା ଥିଲା ଯେ ଖ୍ରୀଷ୍ଟାନ ଧର୍ମ ପ୍ରଚାରକ ମାଇକେଲ ସ୍କଟ ଏଇ ବିପ୍ଳବକୁ ଉସୁକାଉଛନ୍ତି । ଆଉ କେତେକ ଆଉ ଟିକିଏ ଆଗକୁ ଯାଇ, ବିଦ୍ରୋହ ପଛରେ ଆମେରିକାର C. I. A.ର ହାତ ଅଛି ବୋଲି କହୁଥିଲେ । ଅନେକ ଦିନର ପୁରୁଣା କଥା ହେଲେ ମଧ୍ୟ ସେତେବେଳର ଏ ସବୁ ଖବର ଗୁଡ଼ିକ ମୋ ମନ ଭିତରେ ଝାପସା ଭାବରେ ଉଙ୍କି ମାରି ଉଠିଲା ।

ମାଇକେଲ ସ୍କଟଙ୍କୁ C. I. A.ର ଗୁପ୍ତଚର ବୋଲି ସେତେବେଳେ କହୁଥିଲେ ମଧ୍ୟ ସେଇ ମାଇକେଲ ସ୍କଟ, ଜୟପ୍ରକାଶ ନାରାୟଣ ଏବଂ ବିମଳା ପ୍ରସାଦ ଚାଲିହାଙ୍କ ମଧ୍ୟସ୍ଥତାରେ ହିଁ ସେପ୍ଟେମ୍ବର ୬, ୧୯୬୪ରେ ନାଗା ବିପ୍ଳବୀ-ମାନେ ଅସ୍ତ୍ର ସମର୍ପଣ କରି ସରକାରଙ୍କ ସହିତ ଚୁକ୍ତି ସ୍ୱାକ୍ଷର କରିଥିଲେ ।

ଏ ବିଷୟରେ Renthy Keitzarଙ୍କ ଦ୍ୱାରା ଲିଖିତ Triumph Of Faith In Nagaland (P-79)ରେ ଏକ ଉଲ୍ଲେଖ ଥିବାର ମୁଁ ଦେଖିବାକୁ ପାଇଲି । ଏହି ପୁସ୍ତକଟି ମଧ୍ୟ ମୋତେ ଶ୍ରୀମତୀ ଆଓ ଉପହାର ଦେଇଥିଲେ ।

ସ୍ୱପନ ବାବୁ ସେଇ ଦଳର ଲୋକ । ତାଙ୍କୁ ମୁଁ ବିପ୍ଳବୀ କହିବି କି ବିଦ୍ରୋହୀ କହିବି ଠିକ କରି ପାରୁନଥିଲି । ତେବେ ତାଙ୍କ ପ୍ରତି ମୋର କୌତୁହଳ ବଢ଼ିଲା । ଏପରି ଜଣେ ରହସ୍ୟବାଦୀ ବ୍ୟକ୍ତିଙ୍କ ଆତ୍ମଜୀବନୀ ଜାଣିବାକୁ ମୋର ପ୍ରବଳ ଇଚ୍ଛା ହେଲା । ମୁଁ କହିଲି ସ୍ୱପନ ବାବୁ ଆଜି ଆମର ଚାଲିବା ଏତିକିରେ ଥାଉ । ଆପଣ ମୋତେ ଆପଣଙ୍କ ନିଜ କଥା କହନ୍ତୁ ।

ସ୍ୱପନ ଆଉ କହିଲେ ପ୍ରାୟ ୧୯/୨୦ ବର୍ଷ ବେଳକୁ ମୁଁ ଇଣ୍ଡିଆନ ଆର୍ମିରେ ଜଏନ କଲି ଜଣେ ସୈନିକ ରୂପେ । ସୈନିକ ରୂପେ ଟ୍ରେନିଂ ସାରି ସାରି ମୁଁ ଯେତେବେଳେ ଗାଁକୁ ଆସିଲି ଛୁଟି କଟେଇବାକୁ ସେତେବେଳେ ନାଗାଲାଣ୍ଡରେ ବିପ୍ଳବାତ୍ମକ କାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇ ଯାଇଥାଏ । ଗାଁର କେତେକ ଯୁବକ ମୋତେ ତାଙ୍କ ସାଥିରେ ମିଶିବାକୁ କହିଲେ । ସେମାନଙ୍କର ସେତେବେଳେ ପଇସା ପତ୍ରର ଅଭାବ ନଥାଏ । ସେମାନେ ପ୍ରଚୁର ଅର୍ଥ ଦେଲେ । ମୁଁ ତେଣୁ ଆଉ ଆର୍ମିକୁ ଫେରିଲି ନାହିଁ । ସେଇ ଦିନଠୁ ସେମାନଙ୍କ ସାଥିରେ ସବୁବେଳେ ରହିଲି । ଘରେ ମୋର ବାପା ମାଆ ଜନ୍ମରୁ ନ ଥାଆନ୍ତି । ତେଣୁ ମୋତେ କେହି ଖୋଜିବାକୁ ନ ଥାଏ ।

ସ୍ୱପନ ବାବୁଙ୍କ ଗଳା ଧୀରେ ଗମ୍ଭୀର ହୋଇ ଆସୁଥାଏ ।

କଥାର ମୋଡ଼ ବଦଳେଇବାକୁ ଯାଇ ମୁଁ କହିଲି ଗୋଟାଏ ସିଗାରେଟ ନିଅନ୍ତୁ ।

ସେ କହିଲେ ନା ସାର୍ । ତାକୁ ମଧ୍ୟ ଛାଡ଼ି ସାରିଛି । ତେବେ ଗୋଟିଏ କାମ କଲେ ଚଳିବ । ସେ କହିଲେ ଟିକିଏ ଲେମ୍ବୁ ପାଣି ପିଇବ ।

ମୁଁ କହିଲି ତାହାହିଁ ହେଉ । ବୟକୁ କହିଲି ଗୋଟାଏ ଗ୍ଲାସ ଲେମ୍ବୁପାଣି ଏବଂ ମୋ ପାଇଁ ଆଉ କପେ ଚା ଆଣିବା ପାଇଁ ।

ସେ ସରବତ ପିଇ ସାରିଲା ପରେ ମୁଁ ତାଙ୍କୁ ତାଙ୍କ ସଂଗଠନ ବିଷୟରେ ପଚାରିଲି । ସେ କହିଲେ ସଂଗଠନ ବିଷୟରେ ମୋତେ ବିଶେଷ କିଛି ଜଣା ନାହିଁ । ହୁଏତ ଜାଣିବାର ସୁଯୋଗ ନଥିଲା । ଆମକୁ ଯେତିକି କାମ ଦିଆଯାଉଥିଲା ଆମେ କେବଳ ସେତିକି କରୁଥିଲୁ । ମୋଟ କଥାରେ ଆମର ଖାଦ୍ୟ, ଟଙ୍କା ପଇସା କିମ୍ବା ମଉଜ ମଜଲିସର ମଧ୍ୟ କେବେ ଅସୁବିଧା ହୋଇନି ।

ମୁଁ ତାଙ୍କ ଅଣ୍ଡର ଗ୍ରାଉଣ୍ଡ ଲାଇଫ୍ କଥା ପଚାରିଲି । ସେ କହିଲେ ସେଇଟା ସେମିତି କିଛି ନୁହେଁ । ମୁଁ ଆର୍ମିରେ ଥିଲାବେଳେ ଅସ୍ତ୍ରଚାଳନାରେ ଟ୍ରେନିଂ ନେଇ ସାରି ଥିଲି । ତେଣୁ ମୋ ପାଇଁ ସେ ସବୁର ଆବଶ୍ୟକତା ନଥିଲା । ଯେଉଁମାନେ ଟ୍ରେନିଂ ନେଇ ନଥିଲେ ତାଙ୍କ ପାଇଁ ସ୍ୱତନ୍ତ୍ର ହେଉଥିଲା । ତେବେ ଆଜିକାଲି ଯୋଉ ଅଟୋମେଟିକ ଅସ୍ତ୍ରଶସ୍ତ୍ର ସବୁ ବାହାରୁଛି ସେଥିରେ ଟ୍ରେନିଂର ବିଶେଷ ଆବଶ୍ୟକତା ନାହିଁ । ଖାଲି ଧରି ଶିଖିଲେ ହେଲା ।

ଟିକିଏ ଥମି ଯାଇ ସେ ପୁଣି କହିଲେ ସବୁ କିଛି ହୁଏ ଲୋକଙ୍କ ସମର୍ଥନ ମିଳିଲେ । ସେ ବୋଡ଼ୋ, ଉଲଫା ଏବଂ ପଞ୍ଜାବ ଓ କାଶ୍ମୀରର ସନ୍ତ୍ରାସବାଦ ଆନ୍ଦୋଳନର ଉଦାହରଣ ଦେଇ କହିଲେ ଏସବୁ ପଛରେ ଲୋକଙ୍କର ସମର୍ଥନ ରହିଛି । ସେଇଥି ପାଇଁ ପୋଲିସ ବା ଆର୍ମି ସେମାନଙ୍କୁ ଧରିବାକୁ ଅକ୍ଷମ ହେଉଛନ୍ତି ।

ଆମ ବେଳେ ମଧ୍ୟ ଠିକ୍ ସେମିତି ଥିଲା ଗାଁର ଲୋକେ ଆମକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଦେଉଥିଲେ । ତେଣୁ ଆମର ଗତିବିଧି ମଧ୍ୟ ପୋଲିସ ଜାଣିପାରୁ ନଥିଲେ । ସେ କହିଲେ ଅନେକ ଥର ଆମେ ପୋଲିସ ବା ଆର୍ମିର ମୁହାମୁହିଁ ହୋଇଛୁ । ଆମକୁ ଗାଁ ଲୋକ ଭାବି ସେମାନେ ଆମକୁ ଖାଇବାକୁ ଦେଇ ଆମ କଥା ପଚାରନ୍ତି, ଧରେଇ ଦେଲେ ପ୍ରଚୁର ଟଙ୍କା ମିଳିବ ବୋଲି ମଧ୍ୟ କହନ୍ତି । ଏମିତି କେତେଥର ହୋଇଛି ।

ମୁଁ କହିଲି, ଅନ୍ତର୍ଘାତୀ କାର୍ଯ୍ୟ ଆପଣମାନେ କେମିତି କରୁଥିଲେ ତାର ଗୋଟାଏ ଯୋଡ଼ାଏ ଉଦାହରଣ ଅନ୍ତତଃ ଦିଅନ୍ତୁ ।

"ମୋତେ କ୍ଷମା କରନ୍ତୁ ।" ସେ କହିଲେ, ଅନେକ କଥା ଆପଣଙ୍କୁ କହିହେବନି । କହିଲେ ଯେ କ୍ଷତି ଅଛି ସେ କଥା ନୁହେଁ । କାରଣ ଆମ ଉପରୁ ସବୁ କେସ୍ ପ୍ରତ୍ୟାହାର କରି ନିଆଯାଇଛି । ତା ଛଡ଼ା କୌଣସି ଆକ୍ରୋଶମୂଳକ କେସ୍ ହେବ ନାହିଁ ବୋଲି ମଧ୍ୟ ଚୁକ୍ତି ହୋଇଛି । ତେବେ କେବଳ ଗୋଟିଏ କାରଣରୁ କହିବିନି । ସେଇଟା ହେଉଛି ସେ କଥା ଆଉ କହି ଲାଭ ନାହିଁ । ବିପ୍ଳବରେ ସେତେବେଳେ ଆମକୁ ଯୋଉମାନେ ବିରୋଧ କରୁଥିଲେ ସେମାନେ ଅନେକ ପରିମାଣରେ ଆମ ଦ୍ୱାରା କ୍ଷତିଗ୍ରସ୍ତ ମଧ୍ୟ ହୋଇଥିବେ । ତେଣୁ ଯେ ଶୁଖି ଆସୁଥିବା ଘାଆକୁ ଆଉ ଉଖାରିବା ଠିକ୍ ହେବ ନାହିଁ ।

ସ୍ୱପନବାବୁ ତାଙ୍କର ଗୋପନୀୟତାର ଶପଥ ସତ୍ତ୍ୱେ ମୋ ପାଖରେ ତାଙ୍କ ଜୀବନର ଅନେକ ଗୋପନ କଥା କହିଦେଲେ । ସବୁ କଥା ମୋ ପକ୍ଷେ ମଧ୍ୟ ଲେଖିବା ଏବେ ସମ୍ଭବ ନୁହେଁ । ମୁଁ ମଧ୍ୟ ଚୁକ୍ତିବଦ୍ଧ । ଶେଷରେ ସେ ମୋତେ କହିଲେ ମୁଁ ଏବେ ରତ୍ନାକରରୁ ବାଲ୍ମୀକ ହୋଇଛି । ମୁଁ ପୂରାପୂରି ବଦଳି ଯାଇଛି । ଯୌବନର ଚହଲା ଢେଉ ମତେ ଅମଡ଼ା ମଡ଼େଇ ନେଇ ଯାଉଛି ବୋଲି ସେତେବେଳେ ଖାଲି ମୁଁ ନୁହେଁ ଆମ ପରି ଅନେକ ଜାଣିପାରୁ ନଥିଲେ । ଗୋଟାଏ ହୋ ହାଲ୍ଲାରେ ଆମେ ମାତି ଯାଇଥିଲୁ ।

କଥା ଆଡ଼େଇ ମୁଁ ତାଙ୍କୁ ପଚାରିଲି ତେବେ ଯୋଉ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନେଇ ସେ ଦିନ ଆପଣମାନେ ସଶସ୍ତ୍ର ସଂଗ୍ରାମର ରାସ୍ତାକୁ ଓହ୍ଲେଇ ଯାଇଥିଲେ, ତାର ଫଳାଫଳ ବିଷୟରେ କିଛି କହନ୍ତୁ । ସେ କହିଲେ ସେ ବିଷୟରେ ମୁଁ କିଛି କହିପାରିବିନି । ଆପଣ ତ ଖବର କାଗଜ ପଢ଼ୁଛନ୍ତି । ବେଶୀ ଜାଣିଥିବେ ।

ମୋର ମନେପଡ଼ିଲା ସଶସ୍ତ୍ର ସଂଗ୍ରାମରେ ବିଶ୍ୱାସ କରି ଏମିତି କେତେକ ଲୋକ ସତୁରି ଦଶକର ପ୍ରଥମ ଭାଗରେ ଏକ ନୂତନ ସ୍ଲୋଗାନ ସୃଷ୍ଟି କରିଥିଲେ । ଅବଶ୍ୟ ନାଗାଲାଣ୍ଡର ସଶସ୍ତ୍ର ବିପ୍ଳବ ଏବଂ ଭାରତର ଅନ୍ୟାନ୍ୟ ଅଞ୍ଚଳ ଯଥା ପଶ୍ଚିମବଙ୍ଗ, ବିହାର, ଆନ୍ଧ୍ର, କେରଳରେ ଏ ବିପ୍ଳବ ସେତେବେଳେ ବେଶି ମୁଣ୍ଡ

ଟେକଥିଲି । ସେ ସବୁର ସୃଷ୍ଟି ହୋଇଥିଲା ପଶ୍ଚିମବଙ୍ଗର ନକଶାଲ ବାଡ଼ିରୁ । ମୁଁ ଏବେ ଅବସ୍ଥାନ କରୁଥିବା ବଙ୍ଗାଇଗାଓଁ ଠାରୁ ତାହା ପ୍ରାୟ ୧୫୦ କିଲୋମିଟର ଦୂର ହେବ ।

ମୋର ଘାଉରକେଲାରେ ଅବସ୍ଥାନ କାଳରେ ଏ ଦର୍ଶନରେ ବିଶ୍ୱାସ କରୁଥିବା କେତେଜଣଙ୍କୁ ମୁଁ ଜାଣିବାର ସୁଯୋଗ ପାଇଥିଲି । ଆଉ କେତେଜଣଙ୍କ ସହିତ କର୍ମ ଉପଲକ୍ଷେ କଥା ହେବାର ସୁଯୋଗ ମଧ୍ୟ ପାଇଥିଲି । ହେଇତ, ମାତ୍ର ବର୍ଷକ ତଳେ ସେମାନଙ୍କ ଭିତରୁ ଜଣକୁ ଗୋଟିଏ କୋର୍ଟରେ ଭେଟି ଅନେକ ସମୟ ଯାଏ ଦୁଃଖସୁଖ ହୋଇଥିଲି । ସ୍ୱପନବାବୁଙ୍କ ଘର ସେ ଏବେ ଘର ସଂସାର କଲେଣି । ତାହାଣ ହାତରେ ଗୋଟିଏ ପଥର ବସା ରୁପା ମୁଦି ଥିଲା ପରି ଲାଗିଲା ।

କିନ୍ତୁ ଏବେ କେବଳ ଆନ୍ଧ୍ରକୁ ଛାଡ଼ି ଭାରତର ଅନ୍ୟାନ୍ୟ ଅଂଶରେ ସେ ବାୟୁମଣ୍ଡଳ ସୁସ୍ଥସୁର ଥଣ୍ଡା ହୋଇ ଆସିଲାଣି । ଅସାଧାରଣରୁ ସୁସ୍ଥସୁର ସାଧାରଣକୁ ଫେରି ଆସିଲାଣି ।

କିନ୍ତୁ ନାଗାଲାଣ୍ଡର ବାୟୁମଣ୍ଡଳ ଏବେ ବି ଥଣ୍ଡା ପଡ଼ିନି । ଏବେ ଥଣ୍ଡା ପଡ଼ିବା'ର ଦେଖା ଯାଉନି । ଏବେ ତ ଭାରତର ପ୍ରତ୍ୟେକ ଅଞ୍ଚଳରେ ସେଠାକାର ଆଞ୍ଚଳିକ ବାୟୁମଣ୍ଡଳ ହିଁ ବିଦ୍ରୋହ ଘୋଷଣା କରୁଛି । ସମସ୍ତେ ଚାହୁଁଛନ୍ତି ଅସ୍ତ୍ର ମାଧ୍ୟମରେ ସବୁ ସମାଧାନ କରିବାକୁ । ପୂର୍ବରୁ ପଶ୍ଚିମକୁ, ଉତ୍ତରରୁ ଦକ୍ଷିଣକୁ, ଏ ଅଶାନ୍ତ ବାୟୁମଣ୍ଡଳ କାହିଁକି କେଜାଣି ଖୁବ୍ ଶୀଘ୍ର ମାଡ଼ି ଯାଉଛି ଖରା ବେଳର ନିଆଁ ପରି ।

ସ୍ୱପନବାବୁଙ୍କୁ ମୁଁ ତାଙ୍କ ପରିବାର କଥା ପଚାରିଲି । ସେ କହିଲେ ଅଣ୍ଡର ଗ୍ରାଉଣ୍ଡରୁ ଫେରିଲା ବେଳକୁ ଅନେକ ଡେରି ହୋଇ ସାରିଥିଲା । ତଥାପି ବିବାହ କଲି । ଏବେ ମୋର ତିନୋଟି ପୁଅ ଓ ଗୋଟିଏ ଝିଅ । ସେମାନେ ସମସ୍ତେ ସ୍କୁଲରେ ପଢ଼ନ୍ତି । ସ୍ତ୍ରୀ ମଧ୍ୟ ପେପର ମିଲ୍‌ରେ କାମ କରନ୍ତି । ଦୁଇଜଣଙ୍କ ରୋଜଗାର ନଥିଲେ ଏତେବଡ଼ ପରିବାର ଚଳି ନଥାନ୍ତା ।

ମୁଁ କହିଲି ଏବେ ତ ଅନେକ ହେଲାଣି, ଆପଣ ଯାଆନ୍ତୁ ଖାଇପିଇ ଆସିବେ ଚାରିଟା ବେଳାକୁ ପାଖ ଗାଁକୁ ଯିବା ।

ସେ କହିଲେ, ତା' ଅପେକ୍ଷା ମୁଁ ନିଜ ଗାଁକୁ ଆପଣଙ୍କୁ ନେଇ ଯିବି । ସେଇଠୁ ମାତ୍ର ଦଶ କିଲୋମିଟର ଦୂର । ଗୋଟାଏ ଦିନ ସେଠି ଆମମାନଙ୍କ ସାଥିରେ ରହିଲେ ଆପଣ ଅନେକ କଥା ଜାଣିପାରିବେ ।

ସମସ୍ତ ସେତେବେଳକୁ ଗୋଟାଏ ପାଖାପାଖି । ଯେ ବିଦାୟ ନେଲେ ।

—o—

# ନାଗା ପରିବାର ଓ ନାଗା ଭାଷା

ପରଦିନ ସକାଳ । ମୁଁ ମୋ ନିତ୍ୟକର୍ମ ସାରି ଆଠଟା ବେଳକୁ ପ୍ରସ୍ତୁତ ହେଉଥାଏ ବାହାରକୁ ଯିବାକୁ । ବ୍ରିଫ୍‌କେଶ ଭିତରେ ନୋଟ ବୁକ୍ , କଲମ, ଚଷମା ଓ ଅନ୍ୟାନ୍ୟ କାଗଜପତ୍ର ସଜଡ଼ା ସଜଡ଼ି କରୁଥିବା ବେଳେ ମୋର କଲିଂ ବେଲ୍ ବାଜି ଉଠିଲା ।

କମ୍ ଇନ୍ କହି ମୁଁ ପୁଣି କାମରେ ଲାଗିଗଲି । ବ୍ରିଫ୍ କେଶ୍‌ରେ ଫାଇନାଲ ଟଚ୍ ଦେଇ ମୁଁ ଫେରି ଛିଡ଼ା ହେଲା ବେଳକୁ ମୋ ସାମନାରେ ପନ୍ଦର ଷୋହଳ ବର୍ଷର ଝିଅଟିଏ । ଡକଡକ ଗୋରା ପତଳା, ମୁଣ୍ଡ ବାଳ ସାମାନ୍ୟ କହରା । କାନ୍ଧ ଉପରେ ଝୁଲି ପଡ଼ିଛି । ଆଖିରେ ଷ୍ଟିଲ ଫ୍ରେମ୍‌ର ଚଷମା ତାର ସରସ-ନାଳଟିକୁ ବେଶ୍ ବଢ଼େଇ ଦେଉଥାଏ । ଗୋଲାପ ପାଖୁଡ଼ାର ଗାଲ ଉପରେ ସଦ୍ୟ ଯେମିତି ରୁଜ୍ ପାଉଡ଼ର ମଡ଼େଇ ଆସିଛି, ଯଦିଓ ସେଇଟା ପ୍ରାକୃତିକ । ମୁଁ ଆଗରୁ କହିଛି ଆସାମ, ମେଘାଳୟ, ନାଗାଲାଣ୍ଡ ଅରୁଣାଚଳ ଅଞ୍ଚଳର ଝିଅ ମାନଙ୍କର ଏଇଟା ଗୋଟାଏ ପ୍ରାକୃତିକ ସୌନ୍ଦର୍ଯ୍ୟ । ବୋଡ଼ୋ ରମଣୀମାନେ ମଙ୍ଗୋଲିଆନ ପ୍ରଭାବ ହେଇଥିବାରୁ ସେମାନଙ୍କ ଗାଲ ଉପରୁ ଆଖି ଖସେଇ ଆଣି ହୁଏନି ।

ମୁଁ କହୁଥିଲି ସେ ଝିଅଟି କଥା । ପିନ୍ଧିଥିଲା ସ୍କାର୍ଟ ଓ ବ୍ଲାଉଜ । ସୁନ୍ଦର ସ୍ୱାସ୍ଥ୍ୟ । ଗ୍ରୀବା ଉପରେ ଗୋଟିଏ ଷ୍ଟିଲ ଚେନ୍‌ରେ ଝୁଲି ପଡ଼ିଥିଲେ ଜେସସ୍ କ୍ରାଏଷ୍ଟ ଯୁଗ ଯୁଗର ଯନ୍ତ୍ରଣା ନେଇ ।

ଗୁଡ୍ ମର୍ଣ୍ଣିଂ ଅଙ୍କଲ । ସ୍ୱପନ ଆଓ ଇଜ୍ ମାଇଁ ଫାଦର । ସ୍ୱଚ୍ଛ ତଥା ସୁନ୍ଦର ଇଂରାଜୀ ଭାଷା । ଗୋଟାଏ ପାହାଡ଼ି ଝରଣାର ପାଣି ତଳକୁ ଖସିଲା ବେଳର ସ୍ୱର ପରି ।

ମୁଁ କହିଲି ଆରେ ତମେ ଠିଆ ହେଲ କାହିଁକି ? ଭିତରକୁ ଆସ । ବାପା କାହାନ୍ତି ?

ସେ ଆସୁଛନ୍ତି । ଝିଅଟି ସେମିତି ଠିଆ ହୋଇଥାଏ ।

ଏତିକିବେଳକୁ ସ୍ୱପନବାବୁ ପଶି ଆସିଲେ । କହିଲେ ମୋର ଟିକିଏ ଡେରି ହୋଇଗଲା ସାର୍ । ମୁଁ କହିଲି ନାଁ ମୋଟେ ନୁହେଁ, ବସନ୍ତୁ । ସୋଫାକୁ

ହାତ ଦେଖେଇ ମୁଁ କହିଲି ଦୁଇ ଜଣଙ୍କୁ । ସ୍ୱପନବାବୁ କହିଲେ ଇଏ ମୋ ଝିଅ । ଦଶମ ଶ୍ରେଣୀରେ ଏଇ ବାପଟିଷ୍ଟ ଚର୍ଚ୍ଚ ସ୍କୁଲରେ ପଢ଼େ । ଆମେ ଦୁହେଁ ବସିଲୁ । ଝିଅଟି ସେମିତି ଠିଆ ହୋଇଥାଏ । ମୁଁ ପୁଣି କହିଲି ବସ, ଠିଆ ହେଲ କାହିଁକି ? ଖାଲି ଚା କପେ ପିଇ ଦେଇ ବାହାରିବା । ତଥାପି ଝିଅଟି ତଳକୁ ମୁହଁ ପୋତି ଠିଆ ହୋଇଥାଏ । ସ୍ୱପନବାବୁ ତାକୁ ନିଜ ନାଗା ଭାଷାରେ କଅଣ କହିଲେ । ତା'ପରେ ମୋତେ କହିଲେ, ସାର୍ ଆମ କଷ୍ଟମରେ ଦେଖାହେଲା ମାତ୍ରେ ପୁରୁଷ ନାରୀ ନିର୍ବିଶେଷରେ ସମ୍ଭାଷଣର ପ୍ରଥମ ସୋପାନ ହେଲା କରମର୍ଦ୍ଦନ ।

ମୁଁ ଲଜ୍ଜିତ ହୋଇ ପଡ଼ିଲି । ପୂର୍ବାପର ଅପରାଧୀ ଭଙ୍ଗିରେ 'ସରି' କହି ଝିଅର ଦୁଇ ହାତର ପାପୁଲିକୁ ଜାବୁଡ଼ି ଧରି କହିଲି, ମୁଁ ଜାଣି ନଥିଲି ଲୋ ମା' । ଏଣିକି ଏ ଭୁଲ ଆଦୌ ହେବ ନାହିଁ । ଝିଅଟିକୁ ଟାଣି ଆଣି ତା ବାପା ପାଖରେ ବସେଇ ଦେଲି ।

କରମର୍ଦ୍ଦନଟା ଇଂରେଜୀ ଆଦବ କାଇଦା । ଭାରତୀୟ ନୁହେଁ । ଖ୍ରୀଷ୍ଟାନ ଧର୍ମ ମାଧ୍ୟମରେ ଇଂରେଜମାନଙ୍କ ଠାରୁ ନାଗା ଠାକୁ ଆସିଛି । କାଳକ୍ରମେ ସେଇଟା ପୁଣି ନାଗାମାନଙ୍କର ନିଜସ୍ୱ ସଂସ୍କୃତିରେ ପରିଣତ ହୋଇ ଯାଇଛି ।

ମୋର ମନେ ପଡ଼ିଲା ରାଉରକେଲା ତଥା ସୁନ୍ଦରଗଡ଼ ଅଞ୍ଚଳର ଖ୍ରୀଷ୍ଟାନ ଆଦିବାସୀମାନଙ୍କ ଭିତରେ ଏ ପ୍ରଥା ରହିଛି । ପୁରୁଷ ସ୍ତ୍ରୀ, ଯୁବକ ଯୁବତୀ ସମସ୍ତେ ସାକ୍ଷାତ ହେଲା ମାତ୍ରେ କରମର୍ଦ୍ଦନ ପାଇଁ ହାତ ବଢ଼େଇ ଦିଅନ୍ତି । କିନ୍ତୁ ଫରକ ଏତିକି ଆମ ଅଞ୍ଚଳର ଆଦିବାସୀମାନେ କରମର୍ଦ୍ଦନ କଲାବେଳେ ଜୟ ଯିଶୁ ବୋଲି କହି କେବଳ ଆଙ୍ଗୁଳି ଅଗକୁ ଟିକିଏ ଛୁଇଁଦେଲେ ଚଳେ । ନାଗାଲାଣ୍ଡର ଖ୍ରୀଷ୍ଟାନ ମାନଙ୍କର କରମର୍ଦ୍ଦନରେ ସେମିତି କିଛି ନଥାଏ । ପୁରାପୁରି ଇଂରାଜୀ ଷ୍ଟାଇଲ ।

ଭାରତୀୟ ସମାଜ ସଂସ୍କୃତିରେ ବିଶେଷ କରି ନାରୀ ପୁରୁଷ ଭିତରେ କରମର୍ଦ୍ଦନକୁ "ଧର୍ତ୍ତବ୍ୟ ଅପରାଧ" ବୋଲି ଗଣାଯାଏ । କାରଣ କାହିଁକି କେଜାଣି ହାତକୁ ହାତ ଲାଗିଗଲା ମାତ୍ରେ ଯୋଉ 'କରେଣ୍ଟ' ସୃଷ୍ଟି ହୁଏ ତାହା ହୁଏତ ପରବର୍ତ୍ତୀ ସମୟରେ ଧର୍ତ୍ତବ୍ୟ ଅପରାଧଠୁ ବଡ଼ ଏବଂ ଗୁରୁତର ଅପରାଧ କରାଉଥିବ । ତେଣୁ କରି ଏପରିକି ସଭା ସମିତିରେ ମଞ୍ଚ ପୁରସ୍କାର ବିତରଣ ବେଳେ ବଡ଼ମାନେ ଝିଅମାନଙ୍କର ହାତ ଛୁଇଁବା ପୂର୍ବରୁ ଦୁହେଁ ସତର୍କ ହୋଇ ଯାଆନ୍ତି । ଆଉ ଯଦି ବିଶେଷ କରି ସେ ସଭାରେ ପ୍ରଧାନ ଅତିଥିଙ୍କର ସ୍ୱାମୀ କିମ୍ବା ସ୍ତ୍ରୀ ଉପସ୍ଥିତ ଥାଆନ୍ତି ତେବେ ସତର୍କତାର ଘଣ୍ଟିଟା ଅନେକ ଆଗରୁ ମୁଣ୍ଡ ଭିତରେ ଫିଟି ହୋଇଯାଏ ।

ସ୍ୱପନବାବୁ ଉଠିପଡ଼ି କହିଲେ, ସାର୍ ଗୋଟିଏ ଅନୁରୋଧ । ଏବେ ଆମେ ଏଇଠି ଚା ନ ପିଇ ବାହାରି ଯିବା । ପାହାଡ଼ ତଳେ ମୋର ସରକାରୀ କ୍ୱାଟର । ମୋ ସ୍ତ୍ରୀ ଅପେକ୍ଷା କରିଛି । ସେଇବାଟେ ଆମେ ଆମ ଗାଁକୁ ଯିବା । ତେଣୁ ଆମ ବସାରେ ଆପଣ ଚା' ପିଇବେ । ଆପଣଙ୍କୁ ବେଶୀ ସମୟ ମୋଟେ ଅଟକେଇବିନି । ଆମେ ତ ପାହାଡ଼ି ଲୋକ, ଆମ ଘର ଆପଣଙ୍କୁ··· ।

ଏତକବେଳେ ଝିଅଟି କହି ଉଠିଲା, ପ୍ଲିଜ ଅଙ୍କଲ ଆପଣ ମନା କରନ୍ତୁନି ।

ମୁଁ କହିଲି, ଆରେ ନା, ଆପଣ ସେମିତି କାହିଁକି ଭାବୁଛନ୍ତି । ଆପଣ ନ କହିଥିଲେ ମଧ୍ୟ ମୁଁ ଆପଣଙ୍କୁ କହି ଥାଆନ୍ତି । ସେଥିରେ ମୁଁ ଅଧିକ ଖୁସି ହେବି ।

ଆମେ ବାହାରିଗଲୁ । ପାହାଡ଼ ଉପରୁ ଆମ ଗାଡ଼ି ଚକା ମାରି ମାରି ତଳକୁ ଓହ୍ଲାଇଲା । ମାତ୍ର ପାଞ୍ଚ ମିନିଟ ଭିତରେ ଆମେ ଯାଇ ତାଙ୍କ ଘରେ ପହଞ୍ଚିଲୁ ।

ଟୁଲି ସହରଟା ଛୋଟ ହେଲେ ମଧ୍ୟ ଖୁବ ସୁନ୍ଦର । ଗୋଟିଏ ପାହାଡ଼କୁ କାଗଜ କମ୍ପାନୀ ଅଧିକାର କରି ତା ଉପରେ ଟାଉନସିପ କରିଥିଲା ବେଳେ ଅନ୍ୟ ଛୋଟ ପାହାଡ଼ଟିକୁ ଦଖଲକରି ବସିଛନ୍ତି ନାଗାଲଣ୍ଡ ସରକାର ଏବଂ ଅନ୍ୟ କିଛି ଅଂଶ କାଗଜ କମ୍ପାନୀ ।

ସେଇ ପାହାଡ଼ରେ ସ୍ୱପନବାବୁଙ୍କ ଘର । କଂପାନୀ ତରଫରୁ ତାଙ୍କୁ ମିଳିଛି । ଘରଟିକୁ ଦେଖିଲେ ମନେ ହେବନି ଯେ କୌଣସି କେନ୍ଦ୍ର ସରକାରଙ୍କର କମ୍ପାନୀ ତରଫରୁ ସେଇଟା ତିଆରି ହେଇଛି ବୋଲି । ତେବେ ସ୍ୱପନ ବାବୁ ତାକୁ ବାସୋପଯୋଗୀ କରେଇଛନ୍ତି ।

ଶ୍ରୀମତୀ ଆଓ ଆମକୁ ଫାଟକ ପାଖରେ ଦେଖି ତଳକୁ ଓହ୍ଲେଇ ଆସିଲେ ଆମକୁ ଗ୍ରହଣ କରିବାକୁ । ଫାଟକ ପାଖରୁ ଆଓଙ୍କ ଘର ପାଖରେ ପହଞ୍ଚିବାକୁ ହେଲେ ଅନ୍ତତଃ ପକ୍ଷେ ୨୦।୩୦ଟି ପାହ ଚ ଉଠିବାକୁ ହେବ । ୧୦।୧୫ଟା ଉଠିଲା ପରେ ମୁଁ ଏକ ପ୍ରକାର ଥକି ପଡ଼ିଲି । ଶ୍ରୀମତୀ ଆଓ ତଳକୁ ଓହ୍ଲେଇ ଆସି ମୋତେ କହିଲେ ମୁଁ ଆପଣଙ୍କୁ ସାହାଯ୍ୟ କରିବି ? ହସି ହସି ମୁଁ ତାଙ୍କ ଆଡ଼କୁ ହାତଟା କରମର୍ଦ୍ଦନ ଉଦ୍ଦେଶ୍ୟରେ ବଢେଇ ଦେଇ କହିଲି, ଧନ୍ୟବାଦ । ମୁଁ ପାରିବି । ପାରିବିନି ବୋଲି ଭାବୁଛନ୍ତି କି ? ସେ କହିଲେ ନା, ସେମିତି ନୁହେଁ । ଭାବୁଥିଲି ଅଭ୍ୟାସ ନାହିଁ ତ ।

ଆଓ ବାବୁଙ୍କ କାନ୍ଧରେ ହାତ ରଖି ମୁଁ ଠିଆ ହେଇଗଲି ଟିକିଏ ଦମ ନେବା ଉଦ୍ଦେଶ୍ୟରେ । ତା ପରେ ଶ୍ରୀମତୀ ଆଓ ତାଙ୍କ ଝିଅକୁ କହିଲି ଆପଣମାନେ ଆଗରେ ଚାଲନ୍ତୁ । ଆମେ ପଛରେ ଆସୁଛୁ ।

ଘର ପାଖର ଦୃଶ୍ୟ ମଧ୍ୟରେ ବିଶେଷକରି ପ୍ରାୟ ଦୁଇ ହଜାର ଫୁଟ ତଳେ ଥିବା କାଗଜ କଳର ଦୃଶ୍ୟ ମଧ୍ୟ ଉପରେ ଅର୍ଥାତ୍ ଆମେ ଚଢ଼ିଥିବା ପାହାଡ଼ ମଥାରେ କାଗଜ କମ୍ପାନୀର ପର୍ମ ହାଉସର ରଙ୍ଗ ବେରଙ୍ଗର ଘର ମୋତେ ସେଇଠି ପ୍ରାୟ ଦଶ ମିନିଟକାଳ ଠିଆ କରେଇ ଦେଲା ।

ସେଦିନ ଶ୍ରୀ ଓ ଶ୍ରୀମତୀ ଆଓଙ୍କ ଘର କମ୍ବା ସେମାନଙ୍କ ଚାଲି ଚଳଣି ଦେଖିବା ମୋର ପ୍ରଧାନ ଉଦ୍ଦେଶ୍ୟ ନଥିଲା । କାରଣ ସେମାନେ ଦୀର୍ଘଦିନ ଧରି କାଗଜ କଳରେ କାମ କରିବାଦ୍ୱାରା ଏବଂ ଅପେକ୍ଷାକୃତ କସ୍‌ମୋପଲିଟାନ ସହରରେ ରହିବା ଦ୍ୱାରା ସେମାନଙ୍କ ଆଚାର ବ୍ୟବହାରରେ ଅନେକ ପରିବର୍ତ୍ତନ ହୋଇଗଲାଣି । କେତେକାଂଶରେ ଗୋଟାଏ ଶିଳ୍ପ ସଭ୍ୟତାର ଜୀବନ ଯାତ୍ରା ସେମାନଙ୍କ ଜୀବନରେ ମିଶିଥିଲା । ତେଣୁ ମୁଁ ବ୍ୟସ୍ତ ହେଉଥିଲି ସ୍ୱପନ ବାବୁଙ୍କ ଗାଁକୁ ଯିବାକୁ ।

ଖୁବ୍ ଅଳ୍ପ ସମୟ ଭିତରେ ଶ୍ରୀମତୀ ଆଓ ମୋ ସାମନାରେ ଆଣି ଥୋଇଦେଲେ ଗୋଟାଏ ବଡ଼ ପ୍ଲେଟ୍‌ରେ କିଛି କେକ୍, ବିସ୍କୁଟ ଓ ଚା । ମୁଁ ସେତକ ଖାଇ ସାରିଲା ବେଳକୁ ଶ୍ରୀମତୀ ଅଓ ମୋତେ ଖଣ୍ଡିଏ ଫଟୋ ଆଲବମ ଏବଂ ଦୁଇ ଖଣ୍ଡି ବହି ଆଣି ଉପହାର ଦେଲେ । କହିଲେ ଆପଣ ଲେଖକ ଲୋକ । ଆମ ସାହିତ୍ୟ, ସଂସ୍କୃତି ଓ ଧର୍ମ ଇତ୍ୟାଦି ବିଷୟରେ ଏଥିରୁ ଅନେକ ତଥ୍ୟ ପାଇ ପାରିବେ ।

ମୋତେ କୋଟିନିଧି ମିଳିଲା ପରି ଲାଗିଲା । ଚାଲ ପରି ମୁଁ ତାଙ୍କ ହାତରୁ ସେଗୁଡ଼ିକ ଥାମ୍ପି ନେଲି । ଫଟୋ ଆଲବମଟି ଅତି ମୂଲ୍ୟବାନ୍ । ସେଇଟି AO NAGA BAPTIST CHURCH CENTURY ALBUM (1872-1972). ସେଥିରେ ୬୫ଟି ପୃଷ୍ଠାରେ ମୋଟ ୭୩ଟି ଅତି ମୂଲ୍ୟବାନ୍ ଫଟୋ ରହିଛି । ଖ୍ରୀଷ୍ଟାନ ଚର୍ଚ୍ଚମାନଙ୍କ ଦ୍ୱାରା ପ୍ରକାଶିତ । ସେଥିରେ ଅନେକ ଫଟୋ ଅତି ପୁରୁଣା । ସବୁଠାରୁ ପୁରୁଣା ଫଟୋଟି ୧୮୭୨ରେ E W. Clarkଙ୍କ ବାସଗୃହ । କେବଳ ଡକ୍ଟର Clarkଙ୍କ କଥା ଲେଖି ବସିଲେ ତ ଗୋଟାଏ ବିରାଟ ପୋଥି ହେବ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ ନାଗାମାନଙ୍କର ଜନଜୀବନକୁ, ସାହିତ୍ୟ ସଂସ୍କୃତିକୁ, ଧର୍ମ ଧାରଣାକୁ କ୍ଲାର୍କ ଦମ୍ପତି ଯେପରି ଭାବରେ ଅସାଧାରଣ ସ୍ୱାର୍ଥ ତ୍ୟାଗ କରି ନୂତନ ମୋଡ଼ ଦେଇଛନ୍ତି ତାହା ଏକ ବିରଳ ନମୁନା ।

ତେବେ ଆଲବମଟିରେ ୧୮୭୨ ରୁ ୧୯୭୨ ଭିତରେ ନାଗାଲାଣ୍ଡର ଆଓ ଭାଷାଭାଷୀ ଲୋକଙ୍କ ଭିତରେ କିପରି ଖ୍ରୀଷ୍ଟାନ ଧର୍ମ ଆରମ୍ଭ ହେଲା ଏବଂ

କୋଉମାନେ ତାର ପ୍ରଗ୍ରରକ ତାର ବଗ୍ରଟ ଇତହାସ ରହଚ । ଏହାକୁ ଏକ ପ୍ରାମାଣିକ ତଥ୍ୟ ହସାବରେ ନଆଯାଇପାରେ । ଶହେ ବର୍ଷର ଇତହାସକୁ ନେଇ ଗୋଟିଏ ଆଲବମ ଏବଂ ତାହା ସହ୍ତ ସଂକ୍ଷିପ୍ତ ଟିପ୍ପଣୀ ଏ ଯାଏ ମୋ ନଜରକୁ କେବେ ଆସି ନଥିଲା । ମୁଁ ଆଶ୍ଚର୍ଯ୍ୟ ହେଲି ।

ମ୍ୟୁଜିୟମ ମାନଙ୍କରେ ପୁରୁଣା ଫଟୋ ଥିବାର ମୁଁ ଦେଖୁଚ । ସେ ସବୁ ସରକାରଙ୍କ ଦ୍ୱାରା ସଗୃହୀତ । ବହାରର ପୋଲସ କ୍ଲବ ଗୋଟାଏ ଅତ ପୁରୁଣା ଅନୁଷ୍ଠାନ । ସେଠି ବଙ୍ଗଳା, ବହାର ଓ ଓଡ଼ିଶା ଏକତ ଥିବା ସମୟର ବହୁ ପୋଲସ ମୁଖ୍ୟଙ୍କର ବଗ୍ରଟ ବଗ୍ରଟ ଫଟୋମାନ ରହଥିବାର ମୁଁ ଦେଖିଚ । ସେ ସବୁ ପ୍ରାଣରେ ପୁଲକ ସୃଷ୍ଟି କରେ । ଏ ସବୁ ମଧ୍ୟ ସରକାରୀ ପ୍ରଚେଷ୍ଟାରେ ସଂଗୃହୀତ । କନ୍ତୁ ବ୍ୟକ୍ତିଗତ ପ୍ରଚେଷ୍ଟାରେ ଐତହାସିକ ତଥ୍ୟ ଗୁଡ଼ିକୁ ସାଇତ ରଖିବାର ଏତେବଡ଼ ଉଦ୍ୟମକୁ ପ୍ରଶଂସା ନକର ରହ ହୁଏନ । ସେଇ ଅଜଣା ମହାନ୍ ବ୍ୟକ୍ତଙ୍କ ଉଦ୍ଦେଶ୍ୟରେ ମୁଁ ମନେ ମନେ ମୁଣ୍ଡ ନୁଆଇ ପକେଇଲ ।

ଶ୍ରୀମତୀ ଆଓ ମୋତେ ଯୋଡ଼ି ଦୁଇ ଖଣ୍ଡି ବହ ଉପହାର ଦେଲେ ସେଥିରୁ ଖଣ୍ଡିଏ ହେଉଚ **The AO-NAGA GRAMMER.** ତାକୁ ଲେଖିଛନ୍ତି **Mrs. E. W. CLARK.**

୧୮୭୬ ଖ୍ରୀଷ୍ଟାବ୍ଦରେ ଜଣେ ଇଂରେଜ ଭଦ୍ର ମହିଳା ତାଙ୍କ ନଜ ପ୍ରଚେଷ୍ଟାରେ ଲେଖା ନଥିବା ଗୋଟିଏ ଭାଷାକୁ ବୁଝି ତା ଉପରେ ବ୍ୟାକରଣ ସୃଷ୍ଟି କରିବା କମ୍ ବଡ଼ କଥା ନୁହେଁ । ଭାରତର ମାଟି ଉପରକୁ ବହୁ ବଦେଶୀ ଆସିଛନ୍ତି । ଯୋଉ ସମୟରେ ଭାରତରେ ରେଲ ରାସ୍ତା ତ ଦୂରର କଥା ସାଧାରଣ ରାସ୍ତାଟିଏ ମଧ୍ୟ କେବଳ କେତୋଟି ସ୍ଥାନକୁ ଛାଡ଼ିଦେଲେ ଆଉ କୋଉଠି ନଥିଲ, ଆଧୁନକ ଶିକ୍ଷାର ସ୍ୱପ୍ନ ବି କେହ ଦେଖି ନଥିଲେ, ସେତେବେଳେ ଇଂରେଜମାନେ ଆସି ସେମାନଙ୍କ ରାଜ୍ୟ ବସ୍ତାର କରିଚନ୍ତି ସତ୍ୟ, କନ୍ତୁ ତା ସଙ୍ଗେ ସଙ୍ଗେ ଅନେକ ଜନହତକର କାମ ମଧ୍ୟ କରିଛନ୍ତି । କନ୍ତୁ ଶ୍ରୀ ଓ ଶ୍ରୀମତୀ କ୍ଲାର୍କ ଯେମିତ ଭାବରେ ଇଉରୋପରୁ କଲକତା ଯାଏ ଜାହାଜରେ ଆସି ପୁଣି କଲକତାରୁ ଗଙ୍ଗା ଏବଂ ବ୍ରହ୍ମପୁତ୍ର ନଦୀ ଭିତରେ ୧୦୦ କଲୋମିଟରରୁ ବେଶୀ ରାସ୍ତା ବୋଟରେ ଅତକ୍ରମ କର ଶିବସାଗର ସହରରେ ପହଞ୍ଚ ସେଠୁ ପୁଣି ପୂର୍ବପୁରୁ ଲୋକଲୋଚନକୁ ଆସି ନଥିବା ନାଗା ରାଜ୍ୟକୁ ଯାଇ ସେମାନଙ୍କ ପାଇଁ ସ୍କୁଲ ଓ ସ୍ୱାସ୍ଥ୍ୟକେନ୍ଦ୍ର ଇତ୍ୟାଦ ଖୋଲିବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ ବ୍ୟାକରଣ ପ୍ରସ୍ତୁତ କରିବା କମ୍ କଥା ନୁହେଁ । ସେତେବେଳେ ନାଗା ରାଜ୍ୟର ସାମାଜିକ ତଥା ଭୌଗୋଳିକ ଅବସ୍ଥା କପର ଥିଲ ତାହା **Mrs WARD**

ବୋଲି ଜଣେ ଭଦ୍ର ମହିଳାଙ୍କ ଦ୍ୱାରା ଲିଖିତ Glimpse of Assamରେ ଜ୍ଞାନତ । ସେ ଲେଖିଛନ୍ତି—

Reverend E. W. Clark and Mrs Clark have lived for some years without Government's protection, among a rude race of savages learning an unwritin language, isolated from all uropean society and in the rainy season shut up in the hills by swollen rivers and malarious paths, a journey to the plains being impracticable At intervals they can hear from the out-side world by hiring a Naga to go to the nearst Post Office. Often they have been in imminent danger from the blood thirsty habits of the people, different villager·, making raide on each other, and cutting off tue head and hands of their victims; they carry them off to their village".

ଏଥିରୁ ସେ ସମୟର ନାଗାମାନଙ୍କର ଏକ ମୋଟାମୋଟି ସାମାଜିକ ଚିତ୍ର ମିଳୁଛି । ଏପରି ଭୟଙ୍କର ଅବସ୍ଥା ଭିତରେ ନିଜ ଜୀବନକୁ ବିପନ୍ନ କରି ବର୍ଷ ବର୍ଷ କାଳ ଉକ୍ତ ଯୋଡ଼ିମାନେ ନିଜକୁ ନାଗା ମାନଙ୍କ ହିତରେ ପଳ ପଳ କରି ଉତ୍ସର୍ଗ କରି ଦେଇଛନ୍ତି ସେମାନେ ନାଗା ମାନଙ୍କ ଜନଜୀବନରେ ଏକ ସ୍ୱତନ୍ତ୍ର ଈଶ୍ୱରର ଭୂମିକା ଗ୍ରହଣ କରିବା ସ୍ୱାଭାବିକ ।

ଗୋଟିଏ କଥା ମନେପଡ଼େ । ଏଲ୍. ଆଇ. ପଣ୍ଡା ସେତେବେଳେ ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ ଡେପୁଟି ଜେନେରାଲ ମ୍ୟାନେଜର ଥିଲେ ସେତେବେଳେ ଷ୍ଟିଲ ପ୍ଲାଣ୍ଟରେ ଓଡ଼ିଆମାନଙ୍କୁ ବେଶୀ ଭାଗରେ ଚାକିରି ମିଳୁନାହିଁ ବୋଲି ଅଭିଯୋଗ ହେଲା । ତେଣୁ ପଣ୍ଡା ମହାଶୟ ଏକ ସ୍ୱତନ୍ତ୍ର ଯୋଜନା କରିଥିଲେ । ସେଇ ଯୋଜନା ଅନୁଯାୟୀ ସେ ସେତେବେଳେ ସହର ଜଳ ଯୋଗାଣ ବିଭାଗର ଟର୍ନମେନ (Grade-I) ପଦରେ କଟକର ଜଣେ ଓଡ଼ିଆଙ୍କୁ ନିଯୁକ୍ତି ପତ୍ର ଦେଲେ । ସେ ସେତେବେଳେ କଟକ ମ୍ୟୁନିସିପାଲିଟିରେ କାମ କରୁଥିଲେ । ନିଯୁକ୍ତିପତ୍ର ପାଇଲା ପରେ ସେ କହିଲେ ମୋତେ ଆଉ ଟିକିଏ ବେଶୀ ଦରମା ଦିଆଯାଉ । ପଣ୍ଡା ମହାଶୟ ସେଥିରେ ରାଜି ହେଲେ । ପରେ

ସେ ଭଦ୍ର ଲୋକ କହିଲେ, ମୋତେ ସଙ୍ଗେ ସଙ୍ଗେ କ୍ୱାଟର ମିଳିବ ତ ? ମୁଁ ମୋ ବୁଢ଼ୀ ମା'କୁ ସାଙ୍ଗରେ ନେଇଯିବି । ପରିଜା ମହାଶୟ ଅଡୁଆରେ ପଡିଲେ । ତଥାପି ସେ କହିଲେ ମୁଁ ଚେଷ୍ଟା କରିବି । ମାସକ ପରେ ପୁଣି ଥରେ ଚିଠିଗଲା ଆସି ଜଏନ କରିବାକୁ । ସେ କିନ୍ତୁ ଆସିଲେନି । କହିଲେ ଏତେ ଦୂରକୁ ଯିବାକୁ ମୋ ବୋଉ ରାଜି ହେଉନି ।

ଏଇଟା ଥିଲା ସେ ସମୟର କଥା । ଆମ ଲୋକ ଏବେ ମଧ୍ୟ କଟକରୁ ଆଠଗଡ଼ ଅଥବା ଚଉଦୁଆରକୁ ବଦଳିହୋଇ ଯିବାକୁ ରାଜି ହେଉ ନାହାନ୍ତି । କଳାହାଣ୍ଡି ବଦଳି ହେଲେ ମନ୍ତ୍ରୀଙ୍କ ଘରେ ଧାରଣା ଦିଅନ୍ତି ।

ଇଂରେଜମାନେ ଭାରତ, ଭାରତର ସାହିତ୍ୟ, ଇତିହାସ, କଳା ଇତ୍ୟାଦି ବିଷୟରେ ଅନେକ ପୁସ୍ତକ ଲେଖିଛନ୍ତି । ଭାରତୀୟଙ୍କ ଖାଲି ଭାରତୀୟଙ୍କ ସମ୍ମୁଖରେ ନୁହେଁ ବିଶ୍ୱ ଦରବାରରେ ଚହ୍ଲେଇ ଦେବାପାଇଁ ଆମ ଅପେକ୍ଷା ସେମାନଙ୍କ ଦାନ ଯେ ବେଶୀ ଏ କଥା ଅସ୍ୱୀକାର କରି ହେବନି । ଅଧ୍ୟାପକ **AL Basham** ତାଙ୍କର **The wonder that was India** ପୁସ୍ତକରେ ଯେପରି ଭାରତକୁ ଦେଖିଛନ୍ତି ପୃଥିବୀର ଅନ୍ୟ କୌଣସି ବ୍ୟକ୍ତି ଏପରି ଭାବରେ ଭାରତ ବିଷୟରେ ଲେଖିଥିବାର ଆମେ ଶୁଣିନୁ । ଭାରତର କଳା, ସାହିତ୍ୟ, ଇତିହାସ ଭାସ୍କର୍ଯ୍ୟ ଇତ୍ୟାଦି ପ୍ରତ୍ୟେକ ବିଷୟରେ ଏହା ଏକ ଅନବଦ୍ୟ ଅଧ୍ୟୟନ । ଆମର ପାଣିନିଙ୍କ ବ୍ୟାକରଣକୁ ଆମେ ହୁଏତ ଜାଣିନଥିଲୁ । କିନ୍ତୁ ଅଧ୍ୟାପକ ବାସମଙ୍କ ମତରେ ତାହା ପୃଥିବୀର ଶ୍ରେଷ୍ଠତମ ତଥା ଏକମାତ୍ର ବିଜ୍ଞାନ ସମ୍ମତ ବ୍ୟାକରଣ ।

ମୁଁ ଯେତେବେଳେ ଶ୍ରୀମତୀ ଆଓଙ୍କ ହାତରୁ ଶ୍ରୀମତୀ କ୍ଲାର୍କଙ୍କ ଲିଖିତ ଆଓ ଭାଷାର ବ୍ୟାକରଣ ବହିଟି ନେଲିବେଳେ ଉଭୟ ଶ୍ରୀମତୀ ଆଓ ଏବଂ ଦେଢ଼ଶ ବର୍ଷ ତଳର ଅପୂର୍ବ ସ୍ୱାର୍ଥତ୍ୟାଗୀ ମହୀୟସୀ ମହିଳା ଶ୍ରୀମତୀ କ୍ଲାର୍କଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁଇଲି ।

—o—

# ନାଗାଙ୍କ ଗାଁରେ

ମୁଁ ସେଦିନ ମେଗ୍ୱାଂକକ୍ ଗାଁରେ ପହଞ୍ଚିଲି ବେଳକୁ ଦିନ ୧୦ଟା ହୋଇ ଯାଇଥିଲା । ମେଗ୍ୱାଂକକ୍ ଗାଁରେ ସ୍ୱପନ ବାବୁଙ୍କ ଘର । ସାଥିରେ ଥିଲେ ସ୍ୱପନ ବାବୁ, ତାଙ୍କ ଝିଅ ଏବଂ ଆଉ ଜଣେ । ମେଗ୍ୱାଂକକ୍ ଗାଁଟା କୋହିମା ସହରଠାରୁ ପ୍ରାୟ ୧୬ କିଲୋମିଟର ଦୂର । ଅନେକଗୁଡ଼ିଏ ଗ୍ରେଟ ବଡ଼ ପାହାଡ଼ ଭିତର ଦେଇ ଅଙ୍କା ବଙ୍କା ରାସ୍ତାରେ ଯାଇ ପହଞ୍ଚିଲା ବେଳକୁ ଖରାଟା ସେଦିନ ଟିକିଏ ଟାଣ ହୋଇ ଆସିଥାଏ ।

ନାଗାଲଣ୍ଡ ପାହାଡ଼ ମାନଙ୍କରେ ସେଦିନ ଗୋଟାଏ ଅପୂର୍ବ ଦୃଶ୍ୟ ମୋତେ ବେଶୀ ଆକର୍ଷଣ କଲା । ସେଇଟା ହେଉଛି ଜଙ୍ଗଲି କଦଳୀ ଗଛ । ସମସ୍ତ ପାହାଡ଼ଟା ଜଙ୍ଗଲୀ ଗଛରେ ଭର୍ତ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । ଏଠି ପାହାଡ଼ ଜଙ୍ଗଲ ମାନଙ୍କରେ ଯଦି ଏତେ କଦଳୀ ଗଛ ତେବେତ ଏଠି କଦଳୀ ଅନେକ ଶସ୍ତା ହୋଇ ଥିବ । ବୋଧହୁଏ ଏ କଦଳୀ ସବୁକୁ ଖାଇ ଜଙ୍ଗଲର ମାଙ୍କଡ଼ ମାନେ ନିଶ୍ଚୟ ରାମାୟଣର ହନୁମାନ ପରି ବିଶାଳ ବପୁ ବହନ କରିଥିବେ ।

ସ୍ୱପନ ବାବୁ ହସିଲେ । ସେ କହିଲେ ଏଥିରେ ଯୋଉ ଫୁଲଟା କଦଳୀ-ଭୁଏ ତାକୁ ମଣିଷତ ଦୂରରକଥା ପଶୁମାନେ ମଧ୍ୟ ଖାଆନ୍ତିନି । କାହିଁକି ଖାଆନ୍ତିନି ସେ କଥା ଅବଶ୍ୟ ସେ କହି ପାରିଲେନି ।

ମେଗ୍ୱାଂକକ୍ ଗାଁଟା ଗୋଟାଏ ବଡ଼ ପାହାଡ଼ ଉପରେ । ଆମେ ଯାଇ ପହଞ୍ଚିଲୁ ସେ ଗାଁର ଜଣେ ବିଶିଷ୍ଟ ବ୍ୟକ୍ତି ତଥା ଧର୍ମଗୁରୁ ମି: ବି ଟି: ଲୁଏନଙ୍କ ଘରେ । ସ୍ୱପନ ବାବୁ ତାଙ୍କ ଠାକୁ ଆଗରୁ ମୋ ଯିବାକଥା ଜଣାଇ ଥିଲେ । ଶ୍ରୀ ଓ ଶ୍ରୀମତୀ ଲୁଏନ ଆମକୁ ପାଛୋଟି ନେଲେ ।

ଘରଟା ପୁରାପୁରି କାଠରେ ତିଆରି । ଏପରିକି ଘରର ତଟାଣି କାନ୍ଥ ସବୁ ମଧ୍ୟ କାଠ ପଟାରେ ତିଆରି । ରୋଷେଇ ଘର, ପାଇଖାନା ସବୁଠି କାଠ । କେବଳ ଯେ ତାଙ୍କର ଘର କାଠରେ ତିଆରି ତା ନୁହେଁ, ଆସାମରେ ଘର ଗୁଡ଼ିକ ବାଉଁଶରେ ତିଆରି ହୋଇଥିଲାବେଳେ ନାଗାଲଣ୍ଡରେ ଘର ଗୁଡ଼ିକ କାଠରେ ତିଆରି ।

ଏବେତ ପରିବେଶ ବା **environment** ଉପରେ ବେଶ ଜୋର ଦିଆଯାଉଛି । ଗଛ କାଟିବା ପୁରାପୁରି ମନା କରି ଦିଆଗଲାଣି । ଏବେ ଏବେ କୁଆଡ଼େ ଜଙ୍ଗଲର ପଶୁ ପକ୍ଷୀଙ୍କୁ ସର୍କସରେ ବ୍ୟବହାର କରିବାକୁ ମନା କରି ଦିଆ ଗଲାଣି । ଫଳରେ ପଶୁମାନେ ବେକାର ହେବେ ଏବଂ ସର୍କସର ମଣିଷ ମାନେ ମଧ୍ୟ ତା ସାଙ୍ଗକୁ ବେକାର ହେବେ ବୋଲି କେହି କେହି କହିଲେଣି । ଶାସ୍ତ୍ର କହୁଛି ମଣିଷ ମଧ୍ୟ ଗୋଟିଏ ଜୀବ । ଏବେ ଦୁଇଟି ଜୀବ ସମାନ ହେବେ । ଦୁହେଁ ରାସ୍ତାରେ ବୁଲି ବୁଲି ଭିକ ମାଗିବେ କି ନା ଦେଖିବାକୁ ବାକି ରହିଲା । ଭିକ ମାଗିଲାବେଳେ ଗୋଟିଏ ଜୀବ ଅନ୍ୟ ଜୀବ ଉପରେ ବସି ମଧ୍ୟ ଭିକ ମାଗି ପାରିବ ନାହିଁ । ଦୁହେଁ ମିଳି ଏକା ସାଥିରେ ଭିକ ମାଗିଲାବେଳେ କି ଦୃଶ୍ୟ ସୃଷ୍ଟି ହେବ ଏବେଠୁ କଳ୍ପନା କରିବା ସମ୍ଭବ ନୁହେଁ ।

ଜଙ୍ଗଲର କାଠ ବାଉଁଶ ଉପରେ ଯଦି ଠିକ୍ ଏହି ପ୍ରକାର କଟକଣା ଜାରି ହୁଏ ତେବେ ନାଗାଲାଣ୍ଡର ଲକ୍ଷ ଲକ୍ଷ ଲୋକ ଗଛ ତଳେ ରହିବାକୁ ବାଧ୍ୟ ହେବେ । ସେମାନେ କୋଉଥିରେ ଘର ତିଆରି କରିବେ କାଠର ଫର୍ଣ୍ଣିଚରଟିଏ ନହେଲେ ଚଳିବ । କିନ୍ତୁ ଘର ନୁହେଁ, ସାମାନ୍ୟ ଟୁଥ୍‌ପିକ୍‌ଟିଏ କେମିତି ତିଆରି ହେବ ।

ଏଇଟା ଏକ ବିଶେଷ ସମସ୍ୟା । ସମଗ୍ର ମଣିଷ ସମାଜ ଆଗରେ ଏଇଟା ଗୋଟାଏ ବିରାଟ ପ୍ରଶ୍ନ । ଗୋଟିଏ ଦିଗରେ ଭବିଷ୍ୟତର ମଣିଷ ସମାଜକୁ ବଂଚେଇ ରଖିବାକୁ ହେଲେ ଜଙ୍ଗଲ ସଂରକ୍ଷଣର ଆବଶ୍ୟକତା ଏକାନ୍ତ ଜରୁରୀ । ଅନ୍ୟ ଦିଗରେ ବର୍ତ୍ତମାନର ସମାଜକୁ ଜୀବିତ ରଖିବାକୁ ହେଲେ ଜଙ୍ଗଲରୁ କାଠ ବାଉଁଶ କାଟିବା ଏକାନ୍ତ ଜରୁରୀ ।

କିଏ ଦେବ ଏ ପ୍ରଶ୍ନର ଉତ୍ତର ? କୋଉଟା ଆଗ କିଏ କହିବ ? ବୈଜ୍ଞାନିକ, ସମାଜ ବିଜ୍ଞାନୀ, ରାଜନୀତିଜ୍ଞ, ଶାସକ, ପରିବେଶବିତ୍, କିଏ ଏହା'ର ଉତ୍ତର ଦେବ ?

ଅଖ୍ୟାତ ଅନ୍ଧାରି ରାଇଜର ଆଧୁନିକ ସଭ୍ୟତା ଠାରୁ ଦୂରରେ ଥିବା ମେରାଂକ୍କ ଗାଁର ଜଣେ ସାଧାରଣ ନାଗରିକ ଶ୍ରୀ ଲୁଏନ କିନ୍ତୁ ସେ ଦିନ ତାର ଗୋଟିଏ ଉତ୍ତର ମୋତେ ଦେଇଥିଲେ ।

ସେ କହିଲେ ମୁଁ ଆଜି ବଂଚିଲେ ସିନା ଆସନ୍ତା କାଲି ମୋର ପୁଅଟିଏ ଜନ୍ମ ହେବ । ମୁଁ ମଲେ କେମିତି ହେବ ? ମୁଁ ଆଁ କରି ତାଙ୍କ ମୁହଁକୁ ଅନେଇଲି । ସେ କହିଲେ ଯୋଉ ବିଜ୍ଞାନ ଆଜି ମଙ୍ଗଳ ଗ୍ରହକୁ ଯାଉଛି ସେଠି ବସ୍ତି ଗଢ଼ିବାର ଯୋଜନା ପ୍ରସ୍ତୁତ କରୁଛି । ଯୋଉ ବିଜ୍ଞାନ ଦକ୍ଷିଣ ମେରୁରେ ଯାଇ ଗାଡ

ଝୋଲି ଖାଦ୍ୟ ଓ ଫଳ ଯାଇଥ ରହୁଛି, ମୋର ବିଜ୍ଞାନ ପୃଥିବୀର ଆକାଶରେ ମାରଣାସ୍ତ୍ର ଏବଂ କ୍ଷେପଣାସ୍ତ୍ରରେ ଛପର ତିଆରି କରି ସାରିଲେଣି, ସେ ମୋର ଝୁମ୍ପୁଡ଼ିଟିଏ ତିଆରି ପାଇଁ କାଠ ବାଉଁଶର substituteଟିଏ ତିଆରି କରି ଦେଇ ପାରୁନି ? ଲୁହା, ଟିଣ, ଇଟା, ସିମେଣ୍ଟ ଏ ସବୁତ ଆମର ସ୍ୱପ୍ନର ବାହାରେ ।

ସିଲୁଏନ ମୋତେ ତାଙ୍କ ଗାଁ ଭିତରକୁ ନେଇଗଲେ, ଯାଉଥିଲା ବେଳେ ସେ କହିଲେ ପାହାଡ଼ କାଟି ଆମେ ଯେଉଁ ଚାଷ ଜମି ତିଆରି କରିଚୁ, ସେ ଜମି ପାଇଁ ଆମକୁ ଖଜଣା ଦେବାକୁ ପଡ଼େନି, କାରଣ ସେଠି ବନ୍ଦୋବସ୍ତର ଆଇନ କାନୁନ ଲାଗୁ ହୁଏନା । ତେଣୁ ସରକାରଙ୍କର କୌଣସି କୃତକ୍ଷ ସେଠି ଆଏନା ।

ମୁଁ କହିଲି ଯଦି କେହି ଚାହେଁ ତା'ର ସେହି ଜମିଟି ଅନ୍ୟକୁ ବିକି କରିବ ତେବେ ସେ କଅଣ କରିବ ? ସେ କହିଲେ ଆମେ ଗାରେ ମୁଖିଆମାନେ ବସି ଯାହା ସ୍ଥିର କରିବେ ତାହା ହେବ ।

ସେ ମୋତେ ତାଙ୍କ ଗାଁର ଜଳ ଯୋଗାଣ କେନ୍ଦ୍ର ଦେଖେଇବାକୁ ନେଇଗଲେ । ମୁଁ ଦେଖିଲି ପାହାଡ଼ରୁ ଯୋଉ ପାଣି ଝରି ଆସୁଛି ତାକୁ ସଂଗ୍ରହ କରି ସେଠୁ ପୁଣି ପାଇପ ସାହାଯ୍ୟରେ ବିଭିନ୍ନ ଘରକୁ ନିଆ ଯାଇଚି । ଏ ସବୁ କାମ ପାଇଁ ବିଶେଷ କରି ବାଉଁଶ ନଳ ସବୁ ବ୍ୟବହାର କରାଯାଇଚି । ଲୁହାର ପାଇପ୍ ଅନେକ କମ୍ ।

ଏହା ଏକ ଅଭିନବ ପନ୍ଥା । ପ୍ରସ୍ତର ମଧ୍ୟ ଆବଶ୍ୟକତା ନାହିଁ । ଅଥଚ ସ୍ଥାୟୀ ଜଳ ଯୋଗାଣ କେନ୍ଦ୍ର—ପରିଷ୍କାର ଜଳ, ଝରଣା ଜଳ, ମାଛ ଆଖି ପରି ପରିଷ୍କାର ଏବଂ ନିର୍ମଳ ।

ମୁଁ କହିଲି ମୋତେ ଏ ଗାଁର ସବୁଠୁ ଗରିବ ଲୋକର ଘରକୁ ନେଇ ଚାଲନ୍ତୁ ।

ଆମେ ଗଲୁଁ, ମୁଣ୍ଡ ନୁଆଁଇ ଆମେ ଘର ଭିତରକୁ ପଶିଗଲୁଁ, ଠିକ୍ ସେମିତି କାଠ ପଟାର ଘର । ଗୋଟିଏ ମାତ୍ର କୋଠରି । ପଟାର ଚଟାଣ ଉପରେ ବୋଧେ ଲୋକଟା ଶୁଏ । ଖଟ ନାହିଁ, ଉପରୁ ଝୁଲୁଚି ଅନେକ ଗୁଡ଼ିଏ ଶିକା । ଶିକାରେ କେଇଟା ହାଣ୍ଡି ଡେକ୍‌ଚି ଓ ମାଠିଆ । ଆଉ ଗୋଟାଏ ଶିକାରେ ଗୋଟାଏ ଦୁଇଟା କନ୍ଥା ଏବଂ ବାଉଁଶର ପଟି । ସେଇଟା ମସିଣା । ବୁଢ଼ାଟିଏ ବସିଚି, ଅଶୀ କି ନବେ ହେବ ବୟସ । ଆଖିକୁ ଦେଖା ଯାଉନି, କାନକୁ ମଧ୍ୟ ଭଲ ଶୁଭୁନି ।

ଲୁଏନ ତାଙ୍କୁ ତାଙ୍କ ଭାଷାରେ ମୋର ଆସିବା କଥା କହିବାରୁ ସେ ତାର ନର୍ମ ହାତଟା ମୋ ଆଡ଼କୁ ବଢ଼େଇ ଦେଲା । କର ମର୍ଦ୍ଦନ କରି ମୁଁ ତାଙ୍କୁ ତାର ପରିବାର କଥା ପଚାରିଲି । ଲୁଏନ କହିଲେ ସମସ୍ତେ ଅଛନ୍ତି କିନ୍ତୁ କେହି ନାହାନ୍ତି ।

ମାନେ ? ମୁଁ ପଚାରିଲି ।

ସେ କହିଲେ, ବୁଢ଼ାର ତିନି ପୁଅ ଓ ଗୋଟିଏ ଝିଅ । ସେମାନେ ସମସ୍ତେ ବାହା ହୋଇ ଆମର ସାମାଜିକ ପ୍ରଥା ଅନୁସାରେ ଅଲଗା ଘର କରି ରହିଲେଣି । ସେ କହିଲେ ଆମ ପ୍ରଥା ଅନୁସାରେ ବିବାହ କଲା ମାତ୍ରେ ପୁଅ, ବାପ ମାଆଠାରୁ ଅଲଗା ହେବ । ପୁଅ ତା ସ୍ତ୍ରୀ କୁ ନେଇ ସେ ଘରେ ରହିବନି । ପୁଅର ବାପ ମାଆର କର୍ତ୍ତବ୍ୟ ସେଇଠି ଶେଷ ହେଲା ।

ମୁଁ କହିଲି ପୁଅରତ ପୁଣି ବାପ ମାଆ ପ୍ରତି କର୍ତ୍ତବ୍ୟ ଅଛି । ସେ କହିଲେ ସେଇଟା ନୀତିକୁ ମାତ୍ର । ସାମାଜିକ ପ୍ରଥାର ବାହାରେ ଯଦି ପୁଅ ବାପ ମାଆଙ୍କୁ କେତେବେଳେ କିଛି ସାହାଯ୍ୟ କରେ ତେବେ ଆପତ୍ତି ନାହିଁ । କିନ୍ତୁ ଏହା ଏକ ଆବଶ୍ୟକତା ନୁହେଁ ।

ମୁଁ କହିଲି ତେବେ ଏ ଅବସ୍ଥାରେ ବୁଢ଼ା ବଞ୍ଚିବ କେମିତି ?

ଆମ ଗାଁ ତାଙ୍କୁ ବଞ୍ଚେଇବ । ଆମେ ସମସ୍ତେ ତାଙ୍କୁ ବଞ୍ଚାଇବୁ । ତା ପାଇଁ ମୁଠାଏ ଭାତ ଅଭାବ ହେବନି । ଏହାହିଁ ଆମର ସାମାଜିକ ନୀତି ନିୟମ ।

ମୁଁ କହିଲି ଏମିତି ତ ଆହୁରି ଥିବେ । ଯେତେ ଥାଆନ୍ତୁ । ହାତ ଗୋଡ଼ ଚାଲୁ ଥିବା ଯାଏ ସେମାନେ ନିଜର, ହାତ ଗୋଡ଼ ବନ୍ଦ ହୋଇ ଗଲେ ସେମାନେ ଆମର । ତାଙ୍କ ଦାୟିତ୍ୱ ଆମ ସମସ୍ତଙ୍କ ଉପରେ ।

ବାହାରେ ଦଳେ ଝିଅଙ୍କର ନୃପୁର କଣ୍ଠର କୋଳାହଳ ଶୁଣି ମୁଁ ଯେମିତି ଚେତନା ଫେରି ପାଇଲି । ଆମ ସମସ୍ତଙ୍କର ଦୃଷ୍ଟି ସେଇ ନୂପୁର ସ୍ୱରର ନୃପୁର କଣ୍ଠ ଆଡ଼କୁ ଆକର୍ଷିତ ହେଲା ।

ଆମେ ଘର ଭିତରୁ ବାହାରି ଆସିଲୁ ଦେଖିଲୁ । ପ୍ରାୟ ୧୦।୧୫ ଜଣ ୧୫।୧୬ ବର୍ଷ ବୟସର ଝିଅ ବାହାରେ ଠିଆ ହୋଇଛନ୍ତି । ସେମାନଙ୍କ ହାତରେ ବହି ଏବଂ ଖାତା । ସେମାନେ ସ୍କୁଲରୁ ଫେରିଛନ୍ତି । ଗାଁ ମୁଣ୍ଡରେ ସେମାନେ ମୋର ଗାଡ଼ି ଦେଖି କିଏ ଆସିଛି ବୋଲି ଜାଣିବାକୁ ଚାହିଁଲେ । ମି. ଲୁଏନ ସେମାନଙ୍କ ସହିତ ମୋର ପରିଚୟ କରେଇ ଦେଲେ ।

ପାହାଡ଼ ତଳେ ପ୍ରାୟ ୩।୪ କିଲୋମିଟର ଦୂରରେ ଥିବା ଗୋଟିଏ କନଭେଣ୍ଟ ସ୍କୁଲକୁ ଯିବା ଆସିବା କରନ୍ତି । ମିଶନାରୀ ସ୍କୁଲ ପିଲାମାନଙ୍କୁ ସେଠି ସ୍କୁଲ ତରଫରୁ ବହି ଓ ପୋଷାକପତ୍ର ଫ୍ରି ମିଳେ । ମୁଁ ଦେଖିଲି ସେମାନଙ୍କର କଥାବାର୍ତ୍ତା ଆଉର ବ୍ୟବହାର, ପୋଷାକ ପତ୍ର କୌଣସି ଗୁଣରେ ଆମ ସହରର କନଭେଣ୍ଟ ସ୍କୁଲର ଛାତ୍ର ଛାତ୍ରୀଙ୍କ ଠାରୁ କମ ନୁହେଁ । ସେମାନେ ଯେ ଗୋଟିଏ ଗାଁ ସ୍କୁଲରେ ପଢ଼ନ୍ତି ଏକଥା ମୋତେ ବିଶ୍ୱାସ କରି ହେବନି । ଅନେକ ସମୟ ଭିତରେ ଦେଖିଲି ସେମାନଙ୍କ ଭିତରୁ କେତେଜଣ ପାଖରେ ଥିବା ନିଜ କୁଡ଼ିଆ ଘର ଭିତରକୁ ଯାଇ କାମରେ ଲାଗିଗଲେ ।

ନାଗାଲାଣ୍ଡରେ ପୁଅ ମାନଙ୍କ ଅପେକ୍ଷା ଝିଅମାନେ ବେଶୀ ବାହାରର କାମ କରନ୍ତି । ଘର ପରିଚାଳନାରେ ସେଇମାନେହିଁ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ଏପରିକି ସହରର ଗଳି କନ୍ଦିରେ ରାତିରେ ଏକୁଟିଆ ପୁରୁଷ ଲୋକଟିଏ ଯିବ ଯିବାକୁ ଭୟ କରୁଥାଏ ତେବେ ସ୍ତ୍ରୀ ଲୋକଟିଏ ତା'ର ନିରାପତ୍ତାର ଦାୟିତ୍ୱ ନେଇ ତାକୁ ଘରେ ପହଞ୍ଚେଇ ଦିଏ ।

ନାଗାଲାଣ୍ଡର ଝିଅମାନେ ଯେ କେତେ ପରିଶ୍ରମୀ ସେ କଥା ନିଜ ଆଖିରେ ନ ଦେଖିଲେ ବିଶ୍ୱାସ କରି ହେବନି । ତମ୍ବା ପଟାର ଲାଲ ତକ ତକ ଦେହରେ ବର୍ମିଜଙ୍କ ପରି ଖଣ୍ଡେ ଲୁଙ୍ଗି ଏବଂ ଦେହରେ ଖଣ୍ଡେ ସାର୍ଟ (ଢ଼ିଲା ବ୍ଲାଉଜ ପରି) ପିନ୍ଧି ସେମାନଙ୍କୁ ରାସ୍ତା କଡ଼ରେ ପଥର ହଣା, ଗୋଡ଼ିପକା, ମୋରମ ବିଛେଇବା ଠାରୁ ଆରମ୍ଭ କରି ଏକୁଟିଆ ଘୋର ବଣ ଜଙ୍ଗଲରେ ନିଛାଟିଆ ସ୍ଥାନମାନଙ୍କରେ କାଠ ଓ ବାଉଁଶର ବିରାଟ ବୋଝମାନ ମୁଣ୍ଡରେ ବେଲ୍ଟ ବାନ୍ଧି ପିଠିରେ ଝୁଲେଇ ନେଇ ଯାଉଥିବାର ଦୃଶ୍ୟ ଦେଖିଲେ କିଏ ଆଶ୍ଚର୍ଯ୍ୟ ନ ହେବ । ଗୋଟିଏ ଗୋଟିଏ ବାଉଁଶର ଝୁଡ଼ିକୁ ପିଠିରେ ଝୁଲେଇ ସେମାନେ ଯେତିକି ଓଜନର ଜିନିଷ ବହନ କରି ପାରନ୍ତି ତାହା ବୋଧେ ଆମର ଦୁଇଜଣ ପୁରୁଷର ବୋଝ ସହିତ ସମାନ ହେବ । ମନେ ରଖିବାକୁ ହେବ ଯେ ନାଗା ରମଣୀ ଯୋଉ କାମ କରୁ ଥାନ୍ତୁ ନା କାହିଁକି ପିଠିରେ ତାର ପିଲାଟି ମଧ୍ୟ ନିଶ୍ଚୟ ଝୁଲୁଥିବ ଠିକ୍ କଙ୍ଗାରୁ ପେଟର ଛୁଆପରି ।

—o—

# ମୋକକ୍‌ଚଂ

ପରଦିନ ଆମେ ଗଲୁଁ ମୋକକ୍‌ଚଂ । କହିମାରୁ ମୋକକଚଂ ପ୍ରାୟ ୭୦ କିଲୋମିଟର ଦୂର । ସମଗ୍ର ରାସ୍ତାଟା ପାହାଡ଼ ଭିତର ଦେଇ ଯିବାକୁ ହୁଏ । ଘଞ୍ଚ ଜଙ୍ଗଲ ଭିତରେ ଅଙ୍କାବଙ୍କା ରାସ୍ତା । ନେଇଗଲା ସାପ ପରି ମୋଡ଼ି ମୋଡ଼ି ଲମ୍ବି ଯାଏ । ଅତି ହୁସିଆର ଡ୍ରାଇଭର ହୋଇ ନଥିଲେ କେତେବେଳେ ଯେ ଗାଡ଼ିଟା ଯାଇ ହଜାରେ ଫୁଟ ତଳେ ଅସ୍ତିତ୍ୱ ହରାଇ ପଡ଼ିଥିବ ସେ କଥା ଶାଗୁଣା ଚିଲଆ ମଧ୍ୟ ଟେର୍ ପାଇବେନି । ମୋତେ ବଡ଼ ଡର ଲାଗୁଥିଲା, ଯଦିଓ ଏମିତିକା ପାହାଡ଼ିଆ ରାସ୍ତାରେ ମୁଁ ଅନେକଥର ଯିବା ଆସିବା କରିଚି । ଆନ୍ଧ୍ରର ତିରୁପତିର ପାହାଡ଼, ଓଡ଼ିଶାର ସାଲୁରୁ ଘାଟି, ମଶୋରୀ, ଦାର୍ଜିଲିଂ ଏବଂ ଶିଲଂର ପାହାଡ଼ରେ ଗାଡ଼ିରେ ଯିବା ମୋର ଅଭିଜ୍ଞତା ଅଛି । ତଥାପି ନାଗାଲାଣ୍ଡର ପାହାଡ଼ ମୋତେ ସେଦିନ ଭୟ ଦେଖାଇ ଥିଲା । କେରଳର ଡ୍ରାଇଭରଟିକୁ ମୁଁ ଟିକିଏ ତାଗିଦା କରିଦେଇ କହିଲି ଏତେ ବ୍ୟସ୍ତ ହେବା ଦରକାର ନାହିଁ, ଆସ୍ତେ ଆସ୍ତେ ଗଲେ ବି ଚଳିବ । ଏକଥା କହିବାର ଆଉ ଗୋଟିଏ କାରଣ ହେଲା ମାରୁତି ଜିପ୍‌ଟିର ଏକ-ସିଲେଣ୍ଡର ଛୁଇଁଲେଣ୍ଡି ଗାଡ଼ି ଉଡ଼େ । ଦ୍ୱିତୀୟ କାରଣ ହେଲା ରାସ୍ତାର ଦୁଇ ପାଖର ଦୃଶ୍ୟ ଅତି ମନୋରମ । ନାନା ଜାତିକା ଫୁଲ ଗଛ; ଚଢେଇର ସ୍ୱର ଦଳାଦଳି ନାଗା ଯୁବତୀଙ୍କର ପିଠିରେ କାଠ ବା ବାଉଁଶ ନେଇ ପାହାଡ଼ ଚଢ଼ିବାର ଦୃଶ୍ୟ, ଦୂର ଦିଗବଳୟ ଦେହରେ ମିଶି ଯାଇଥିବା ପାହାଡ଼ ମଥାନରେ ଗାଁର ଛବି, ପାହାଡ଼ ତଳେ ଝରଣା ଏବଂ ନଈ, ପାହାଡ଼ ଦେହରେ ଭସା ମେଘର ଲୁଚକାଳି ଖେଳ ଏ ସବୁକୁ ନ ଦେଖି ଏଡ଼େଇ ଦେଇ ମୁଁ ଚାଲି ଯିବାକୁ ଚାହୁଁ ନଥିଲି । କେହି ଯାଇ ପାରେନା ମଧ୍ୟ । ଏପରିକି ଜଣେ କାଠଭୂତ ମଣିଷଟିଏ ମଧ୍ୟ ଏ ଦୃଶ୍ୟ ଦେଖିଲେ ନିଜର ଅଜାଣତରେ ଦଣ୍ଡେ ଛିଡ଼ା ହେବାକୁ ବାଧ୍ୟ ହେବ ।

ହଠାତ୍ ଗୁଡ଼ୁମ କରି ଗୋଟାଏ ଶବ୍ଦ ହେଲା । ବନ୍ଧୁକ ଏବଂ ପିସ୍ତଲର ଶବ୍ଦ ସହିତ ମୁଁ ଅନେକ ଦିନରୁ ପରିଚିତ । ଆସାମ ଆସିଲା ପରଠୁ ବୋମାର ବିସ୍ଫୋରଣ ସହିତ ମଧ୍ୟ ପରିଚିତ ହୋଇଗଲିଣି । ହୋଇଛି ସେଦିନ ମୋର ସରକାରୀ ବାସଭବନ ଠାରୁ ମାତ୍ର ଶହେ ଗଜ ଦୂରରେ ଥିବା ଅଫିସର୍ସ କ୍ଲବକୁ ଠିକ ଦିନ ଚାରିଟାବେଳେ ବୋମା ମାରି ଏପରି ଭାବରେ ଉଡ଼େଇ ଦିଆଗଲା ଯେ ବିଶାଳ କୋଠାଟା ମାତ୍ର କେଇଟା ସେକେଣ୍ଡ ଭିତରେ ଧୂଳି ହୋଇ ମାଟିରେ ମିଶିଗଲା ।

ତା ଭିତରେ ଥିବା ମଣିପର ପର୍ଶ୍ୱ ମଧ୍ୟ ମିଳି ନଥିଲା । ଅନେକ ଦୂରରେ ତାର ଝୁଲୁଥିମାଂସ କଦବା କେବଳ କେମିତ ଦେଖି ଥିବାର ଶୁଣା ଯାଇଥିଲା ।

ଡ୍ରାଇଭର ଗାଡ଼ି ଅଟକେଇ ଦେଲା ।

"ହେଣ୍ଡ୍ସ ଅପ୍" । ଏକାଥରେ ଆଠ ଦଶ ଜଣଙ୍କର କଣ୍ଠଫଟା ଚିତ୍କାର ଶୁଣି ମୁଁ ଚମକି ପଡ଼ିଲି । ଉପରକୁ ଗ୍ରୀବା ଦେଖିଲି ରାସ୍ତା କଡ଼ରେ ଥିବା ଗଛମାନଙ୍କରୁ ବନ୍ଧୁକ ଏବଂ ଅନ୍ୟାନ୍ୟ ମେସିନଗନ୍‌ର ନଳୀଗୁଡ଼ିକ ମୋ ଆଡ଼କୁ ମୁହେଁଇଚି ଏବଂ ଆର୍ମି ପୋଷାକ ପିନ୍ଧା ସଶସ୍ତ୍ର ବାହିନୀର ଲୋକମାନେ ମୋ ଆଡ଼କୁ ଅନେଇଛନ୍ତି । ମାତ୍ର କେଇ ଫୁଟ ଦୂରରେ ଥିବା ଗୋଟିଏ କୋଠା ଉପରୁ ମଧ୍ୟ କେତେକ ପୋଲିସ ଠିକ ସେମିତି ମୋ ଆଡ଼କୁ ବନ୍ଧୁକ ଦେଖେଇ ଅନେଇଛନ୍ତି ।

ମୁଁ ଦ୍ୱନ୍ଦ୍ୱରେ ପଡ଼ି ଗଲି । ଏମାନେ ପୋଲିସ ନା ନାଗା ହୋଷ୍ଟେଲ୍ସ । ମୁଁ ଗାଡ଼ିରୁ ଓହ୍ଲାଇ ହାତ ଟେକିବାକୁ ଯାଉଥିଲାବେଳେ ଦୁଇଜଣ ଅଫିସର ମୋ ଆଡ଼କୁ ଦୌଡ଼ି ଆସିଲେ । ମୋ ଗାଡ଼ିଟାରେ ପୋଲିସ ଗାଡ଼ିର ସବୁ ଚିହ୍ନ ଥିଲେ ମଧ୍ୟ ମୁଁ ଥିଲି ସାଧା ପୋଷାକରେ । ଜଣେ ତାଙ୍କ ଭିତରୁ ମୋତେ ବର୍ମିଜ୍ ଉଚ୍ଚାରଣରେ ପଚାରିଲେ, ଆପଣ କିଏ ?

ମୁଁ ମୋର ପରିଚୟ ଦେଇ ଯାତ୍ରାର ଉଦ୍ଦେଶ୍ୟ ପ୍ରକାଶ କରିବାରୁ ସେ କହିଲେ, ସାର, ଆପଣ ଟିକିଏ ଅପେକ୍ଷା କରନ୍ତୁ । ଆଗରେ ଟାଉନ ଭିତରେ ନାଗାଲାଣ୍ଡର ମୁଖ୍ୟମନ୍ତ୍ରୀ ରାସ୍ତାର ଛକ ଉପରେ ଗୋଟିଏ ସାଧାରଣ ସଭାରେ ଭାଷଣ ଦେଉଛନ୍ତି । ଆମେ ସବୁ ତାଙ୍କ ସିକ୍ୟୁରିଟି ଫୋର୍ସର ଲୋକ । ତାଙ୍କ ସଭା ଏବେ ସରିଯିବ । ତା ପରେ ଅପଣ ଯିବେ ।

ସେଇଟା ଥିଲା ଗୋଟିଏ ଗ୍ରେଟ ସହର । ତା ନାଁ ଚ୍ୟାଂଟୋଙ୍ଗିଆ **(Changtongya)** । ମୋ ପାଇଁ ଥିଲା ସେଇଟା ଗୋଟାଏ ଅପୂର୍ବ ସୁଯୋଗ । ମୁଁ କହିଲି କିଛି ସମୟ ଯଦି ଅଟକିବାକୁ ପଡ଼ିବ ତେବେ ମୋତେ ଟିକିଏ ଅନୁମତି ଦିଅନ୍ତୁ । ମୁଁ ମୁଖ୍ୟମନ୍ତ୍ରୀ ଏବଂ ତାଙ୍କ ସଭାକୁ ଟିକିଏ ଦେଖିଦିଏ । ସେ ରାଜି ହେଲେ । ମୋ ସହିତ ଜଣେ ଅଫିସରଙ୍କୁ ଦେଇ ସଭା ପାଖକୁ ପଠେଇ ଦେଲେ ।

ରାସ୍ତାର ଠିକ୍ ଛକ ଉପରେ ସଭାର ଆୟୋଜନ ହୋଇଚି । ଟ୍ରାଫିକ ଷ୍ଟାଣ୍ଡ ଉପରେ ମଞ୍ଚ ଏବଂ ତା ଉପରେ ମୁଖ୍ୟମନ୍ତ୍ରୀ । ତାଙ୍କ ପାଖରେ ଆଉ କେତେଜଣ । ପ୍ରାୟ ଦୁଇଶହ ଖଣ୍ଡେ ଲୋକ । କିନ୍ତୁ ପୁଲିସ ତା'ର ଦୁଇଗୁଣ । ସଭା ସ୍ଥଳରୁ ପ୍ରାୟ ଅଧ କିଲୋମିଟର ଦୂର ପର୍ଯ୍ୟନ୍ତ ପୋଲିସ ବନ୍ଦୋବସ୍ତ ହୋଇ ପଡ଼ିଚି । ଘରର ଛାତ ଉପରୁ ସେମାନେ ଷ୍ଟେନଗନ ପକାଇ ଧରିଚନ୍ତି । ମୁଁ ଦେଖିଲି ଭାରତର ପ୍ରଧାନମନ୍ତ୍ରୀଙ୍କ ପାଇଁ ମଧ୍ୟ ଏତେ ପୋଲିସ୍‌ର ଆୟୋଜନ ହୋଇ ନଥାଏ । କିନ୍ତୁ ନାଗାଲାଣ୍ଡ୍‌ର ମୁଖ୍ୟମନ୍ତ୍ରୀଙ୍କ ପାଇଁ ଏ ସବୁର ଆୟୋଜନ ଏକାନ୍ତ ଆବଶ୍ୟକ ।

ସଭାସ୍ଥଳ କିନ୍ତୁ ବେଶ ଶାନ୍ତିପୂର୍ଣ୍ଣ । ମୁଖ୍ୟମନ୍ତ୍ରୀଙ୍କ ଭାଷଣ ପରେ ଦୁଇ ତିନିଜଣ ମଞ୍ଚ ପାଖକୁ ଯାଇ କାଗଜରେ ଲେଖି ଆଣିଥିବା କେତୋଟି ମେମୋରାଣ୍ଡମ ପଢ଼ିଲେ ଏବଂ ତାକୁ ମୁଖ୍ୟମନ୍ତ୍ରୀଙ୍କୁ ଦେଲେ । ଉତ୍ତରରେ ମୁଖ୍ୟମନ୍ତ୍ରୀ ମଧ୍ୟ ସେମାନଙ୍କୁ କିଛି କହିଲେ । ସେ ସବୁ ନାଗା ଭାଷାରେ ଥିଲା । ତେଣୁ ମୁଁ କିଛି ବୁଝୁଁ ନଥିଲି । ତେବେ ମୋ ପାଖରେ ଥିବା ପୋଲିସ ଅଫିସର ଜଣକ କହିଲେ ସେ ସବୁ ସ୍ଥାନୀୟ ସମସ୍ୟା ଉପରେ ଥିଲା ।

ସଭା ଶେଷ ହେଲା, ମାତ୍ର ୫।୭ ମିନିଟ ଭିତରେ ରାସ୍ତା ମଧ୍ୟ ଖୋଲିଗଲା । ମୋ ଗାଡ଼ି ପୁଣି ଆଗେଇଲା । ମୋକକ୍‌ଚଂ ସହରରେ ଆମେ ପହଞ୍ଚିଲା ବେଳକୁ ଦିନପ୍ରାୟ ୧୨ଟା । ରାସ୍ତାରେ ଆଉ ଗୋଟାଏ ଦଟା ଗ୍ରେଟ ସହର ପଡ଼ିଲା, ସେ ଗୁଡ଼ିକ ହେଲା ଟୁଚୁଇମବାଂ ଏବଂ ମଂକୋଲେମ୍ବା ।

ମୋକକଚଂ ଗୋଟିଏ ବଡ଼ ସହର । ଲୋକ ସଂଖ୍ୟା ପ୍ରାୟ ପଚିଶ ହଜାର । ଜିଲ୍ଲାର ସଦର ମହକୁମା, ବ୍ରହ୍ମଦେଶ ସୀମାରୁ ଆଉ ପ୍ରାୟ ୧୫୦ କିଲୋମିଟର ଦୂର । ସମୁଦ୍ର ପତନଠାରୁ ପ୍ରାୟ ୧୫ଶହ ଫୁଟ ଉପରେ ଅତ୍ୟନ୍ତ ସୁନ୍ଦର ସହରଟିଏ । ରାସ୍ତାଘାଟ ବେଶ ପରିଷ୍କାର ପରିଚ୍ଛନ୍ନ । ଘରଗୁଡ଼ିକ ମଧ୍ୟ ରଙ୍ଗ ଦିଆ ହୋଇ ଚକ୍ ଚକ୍ କରୁଚି । ଯେଉଁଆଡ଼େ ଗୋଟାଏ ଉତ୍ସବର ସୂଚନା । ପୁରୁଷ-ମାନଙ୍କ ଅପେକ୍ଷା ନାରୀମାନଙ୍କ ପ୍ରଚଳନ ବେଶୀ । ଦୋକାନ ବଜାର ହୋଟେଲ ସବୁଠି ନାରୀର ପ୍ରାଧାନ୍ୟ ବେଶୀ । ଫୁଟପାଥରେ ଶାଗ ବା ଖଡ଼ା ବିକିବାଠାରୁ ଆରମ୍ଭ କରି ହୋଟେଲରେ ଚା' ଦିଆରି ପର୍ଯ୍ୟନ୍ତ ଅଧିକାଂଶ ସ୍ଥାନରେ କେବଳ ମହିଳା । ବେଶଭୂଷା ମଧ୍ୟ ପରିଷ୍କାର ପରିଚ୍ଛନ୍ନ । ବେଶଭୂଷାରେ ଜାତୀୟତାର ଚିହ୍ନ ମଧ୍ୟ ଯଥେଷ୍ଟ । ନାଗା ଶାଲ କହିଲେ କେବଳ ଗୋଟିଏ ପ୍ରକାର ଶାଲକୁ ବୁଝାଏ । ସମସ୍ତଙ୍କର ସେଇ ଗୋଟିଏ ପ୍ରକାର ଶାଲ । ଭିନ୍ନ ପ୍ରକାର ଶାଲଟିଏ ଦୋକାନରେ ବିକ୍ରୀ ହେବାର ଦେଖିଲିନି । ଏ ଗୁଡ଼ିକ ହାତ ତନ୍ତରେ ତିଆରି ।

ମହିଳା କଲେଜ ଗାଡ଼ି ଡ୍ରାଇଭ କରୁଥିବାର ଦେଖିଲି । ସେମାନଙ୍କ ବେଶଭୂଷାରେ ଅନେକାଂଶରେ ବିଦେଶୀ ଛାପ । ଓଠରେ ଗାଢ଼ ଲାଲ ଲିପଷ୍ଟିକ । ସଜାଡ଼ିବନ୍ଧା ବବ୍ ହୋଇଥିବା ସାମ୍ପୁ । ଆଖିରେ କଳା ଚଷମା । ପୋଷାକ ମଧ୍ୟ ସେମିତି । ଦେଖିଲେ ହଠାତ୍ ବୁଝି ହେବନି ଏମାନେ ଦେଶୀ ନା ବିଦେଶୀ ।

ମୁଖ୍ୟ ମାର୍କେଟ ଛକ ଉପରେ ବୁଲୁ ବୁଲୁ ହଠାତ୍ ନଜର ପଡ଼ିଲା ଗୋଟାଏ ବଡ଼ଟ ସାଇନବୋର୍ଡ ଉପରେ । ଲେଖା ଅଛି ଡାକ୍ତର ପି. କେ ପଟ୍ଟନାୟକଙ୍କ କ୍ଲିନିକ । ଆଶ୍ଚର୍ଯ୍ୟ ହେଲି, ଏଠିବି ଓଡ଼ିଆ ଅଛନ୍ତି ? ବଡ଼ଟ କ୍ଲିନିକ । ସୁସଜ୍ଜିତ ମଧ୍ୟ ସାମନାରେ । ଦୁଇଜଣ ନାଗା ରମଣୀ । ଇଂରାଜୀରେ ପଚାରିଲି ଡାକ୍ତର

ପଟ୍ଟନାୟକ ଅଛନ୍ତି ? ଜଣେ କହିଲେ ସେ ଓଡ଼ିଶା ଯାଇଛନ୍ତି । ଦିନେ ଦୁଇଦିନ ଭିତରେ ଫେରିବେ । ଓଲଟି ପଚାରିଲେ କଅଣ କିଛି କାମ ଅଛି ? ମୁଁ କହିଲି, ନା, ଓଡ଼ିଶାରୁ ଆସିଥିଲି ବୋ'ଲି ଦେଖା କରିବାକୁ ଚାହୁଁଥିଲି । ସେ କହିଲେ, ତେବେ ଆଉ ଜଣେ ଓଡ଼ିଆ ଡାକ୍ତର ଏଠି ଅଛନ୍ତି । ତାଙ୍କ ସହିତ ଦେଖା କରନ୍ତୁ । ସେ ମୋତେ ସାଥିରେ ନେଇ ପାଖରେ ଥିବା ଡାକ୍ତର ସାହୁଙ୍କ ସହିତ ପରିଚୟ କରେଇ ଦେଲେ ।

ଡାକ୍ତର ସାହୁ ସେତେବେଳେ ତାଙ୍କ ଚେମ୍ବରରେ ରୋଗୀ ଦେଖୁ ଥାଆନ୍ତି । ମୋତେ ଦେଖି ରୋଗୀ ଦେଖିବା ବନ୍ଦ କରିଦେଲେ । ସେମାନଙ୍କୁ ଟିକିଏ ଅପେକ୍ଷା କରିବାକୁ କହିଲେ । ସେ କଥା ଛଳରେ କହିଲେ ଡକ୍ଟର ପଟ୍ଟନାୟକ ଏଠି ଜଣେ ନାଗା ଝିଅକୁ ବିବାହ କରି ଘରଦ୍ୱାର କରି ରହିଲେଣି । ତାଙ୍କର ଦୁଇଟି ପିଲା ବାହାରେ ପଢ଼ନ୍ତି । ଡାକ୍ତର ହିସାବରେ ଭଲ ନା ଅଛି ।

ମୁଁ ତାଙ୍କ ନିଜ କଥା ପଚାରିଲି । ସେ କହିଲେ ମୁଁ ୧୫ ବର୍ଷ ହେଲା ଆସିଲିଣି । ଏଠି ନାଗାଲାଣ୍ଡ ସରକାରରେ କାମ କରୁଛି । କିନ୍ତୁ ଏଠି ସ୍ଥାୟୀ ବାସିନ୍ଦା ହେଇ ରହିବାକୁ ମୋର ଇଚ୍ଛା ନାହିଁ । ସେ କହିଲେ ନାଗାଲାଣ୍ଡରେ ଆହୁରି ଅନେକ ଡାକ୍ତର ଅଛନ୍ତି ଏବଂ ଏଇ ସହରରେ ଆହୁରି ଚାରିଜଣ ଓଡ଼ିଆ ଡାକ୍ତର ଅଛନ୍ତି । ଡାକ୍ତର ଛଡ଼ା ଆହୁରି ଅନେକ ଓଡ଼ିଆ ଏଠି ଅଛନ୍ତି । ତେବେ ସେମାନେ ବିଶେଷ କରି ଆର୍ମି ବା କେନ୍ଦ୍ରୀୟ ପୋଲିସ ବିଭାଗ ମାନଙ୍କରେ କାମ କରନ୍ତି ।

ଆଗରୁ କହିଛି ମୋକକଚଂ ସହର ବେଶ୍ ବଡ଼ ସହର । ଅନେକଗୁଡ଼ିଏ ପାହାଡ଼କୁ ଏ ସହର ଦଖଲ କରି ବସିଛି । ତେଣୁ ଅବସ୍ଥିତି ଏପରି ଯେ ଗୋଟିଏ ଘର ଜଣଙ୍କର ପାଦ ତଳେ ଥିଲା ବେଳେ ଅନ୍ୟଟି ମଥାର ଅନେକ ଉପରେ । ରାସ୍ତା ଘାଟ ମଧ୍ୟ ସେମିତି । କୋଉଠି ସିଧା ଉପରକୁ ତ ଅନ୍ୟ କୋଉଠି ସିଧା ତଳକୁ ଖସିବାକୁ ପଡ଼େ । ସବୁ ପାର୍ବତ୍ୟ ସହରର ଅବସ୍ଥିତି ପ୍ରାୟ ଏମିତି । ମଶୋରି, ଦାର୍ଜିଲିଂ, ଶିଲଂ ଏବଂ ଉତ୍ତର ପୂର୍ବାଞ୍ଚଳର ସମସ୍ତ ସହର ଗାଁ ଗଣ୍ଡାର ଘର ଗୁଡିକର ଅବସ୍ଥିତି ଠିକ୍ ଏମିତି । ରାତିରେ ଲାଇଟ ଜଳିଲେ ସହର ଗୁଡ଼ିକ ଅପୂର୍ବ ଶୋଭା ଧାରଣକରେ ।

ମୋକକଚଂ ସହରର ଇତିହାସ ଶହେ ବର୍ଷର ଇତିହାସ କହିଲେ ଚଳେ । ୧୮୯୦ ଫେବୃୟାରୀ ୨୮ ତାରିଖରେ ମୋକକଚଂ ସହର ପ୍ରଥମ କରି ଅବିଭକ୍ତ ଆସାମର ନାଗାହିଲ ଡିଷ୍ଟ୍ରିକ୍ଟ ହିସାବରେ ସ୍ୱାତନ୍ତ୍ର୍ୟ ଲାଭ କଲା । ସେତେବେଳେ ସେ ସହରଟିକୁ ଗୋଟିଏ ସବଡିଭିଜନ ପାହ୍ୟା ଦିଆଗଲା । ତା

ପରେ ୧୯୫୭ରେ ତାକୁ ଜିଲ୍ଲା ପାହ୍ୟା ଦିଆଗଲା । କିନ୍ତୁ ସେଥିରୁ ଓଖା ଓ ଜୋହ୍ନେବୋଟା ଦୁଇ ସବଡ଼ିଭିଜନକୁ କାଢ଼ି ନେଇ ଦୁଇଟି ସ୍ୱତନ୍ତ୍ର ଜିଲ୍ଲା କରାଗଲା ।

ମୋକକଚାଂ ସହରର ବିଶେଷତ୍ୱ ହେଲା ସେଥିରେ ପ୍ରାୟ ୯୦ ଭାଗ ଲୋକ ଆଓ ଜାତିର । ନାଗାଲାଣ୍ଡର ଅନ୍ୟାନ୍ୟ ଜିଲ୍ଲା ମାନଙ୍କରେ ଅନ୍ୟାନ୍ୟ ଜାତି ମିଶି ରହୁଥିଲେ ମଧ୍ୟ ମୋକକଚାଂ ଜିଲ୍ଲାରେ କେବଳ ଆଓ ଜାତି କେମିତି ରହିଲେ ମୁଁ ବୁଝି ପାରିଲିନି । ଏମାନେ ସମସ୍ତେ ପ୍ରାୟ ଖ୍ରୀଷ୍ଟିଆନ । ସମଗ୍ର ନାଗା ରାଜ୍ୟରେ ମୋର ମନେ ହୁଏ ଶହେରୁ ଉନେଇଶ ଖ୍ରୀଷ୍ଟିଆନ । ପ୍ରତିବର୍ଷ ସେ ସଂଖ୍ୟା ବଢ଼ୁଚି ମଧ୍ୟ ଏବଂ ଦ୍ରୁତ ଗତିରେ ବଢ଼ୁଚି । ସେମାନେ କହନ୍ତି ସରକାର ଯୋଉଠି ଥିଲେ ସେଠି ଲୋକଙ୍କର ଧାର୍ମିକ ଧ୍ୟାନ ଧାରଣା ବଦଳିଲେ ଯଦି ସେମାନଙ୍କ ସମାଜରେ ଗୋଟିଏ ଉନ୍ନତ ସ୍ତରକୁ ଅଣାଯାଇ ପାରିଲା ତେବେ କ୍ଷତି କଅଣ ? ଓଡ଼ିଶାର ଭାଷା, ସାହିତ୍ୟ ଓ ଇତିହାସକୁ ଖ୍ରୀଷ୍ଟିଆନ ମାନଙ୍କ ଦାନତ କମ ନୁହେଁ ।

ମୁଁ ଗଲାବେଳକୁ ମୋକକଚାଂ ସହର ଶତବାର୍ଷିକୀ ପାଳନ ପାଇଁ ନିଜକୁ ପ୍ରସ୍ତୁତ କରୁଥାଏ । ଷ୍ଟାଡ଼ିଅମରେ ଉତ୍ସବର ବିରାଟ ଆୟୋଜନ ଚାଲିଥାଏ । ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ ସମସ୍ତେ ଆସିବାର କଥା ।

ଦେଖିଲି ଗୋଟିଏ "ଲଗ ଡ୍ରମ" ତିଆରି ଚାଲିଚି । ବିଶାଳକାୟ କାଠ ଗଡ଼ର ଢୋଲଟିଏ । ଏଇଟା ସେମାନଙ୍କର ପାରମ୍ପରିକ ବାଦ୍ୟଯନ୍ତ୍ର । ପ୍ରତ୍ୟେକ ଗାରେ ଏମିତି ଗୋଟିଏ ଡ୍ରମ ଥାଏ । ସେଥିରେ ବାହ୍ୟ ଆକ୍ରମଣରୁ ରକ୍ଷା ପାଇବା ପାଇଁ ବିଭିନ୍ନ ସାଙ୍କେତିକ ଧ୍ୱନିମାନ ଦେଇ ଗ୍ରାମବାସୀଙ୍କୁ ସତର୍କ କରି ଦିଆଯାଏ ।

ଷ୍ଟାଡ଼ିଅମରେ ପ୍ରସ୍ତୁତ ହେଉଥିବା ଡ୍ରମଟି କିନ୍ତୁ ବିଶାଳକାୟ । ତାକୁ ୪୦/୫୦ ଜଣ ଠେଲି ଠେଲି ଏବଂ ଦଉଡ଼ିରେ ବାନ୍ଧି ଘୋଷାରି ଆଣିବାକୁ ହେବ ବୋଲି ସେମାନେ କହିଲେ । ତାକୁ ବଜେଇ ନାଗାମାନେ ସେମାନଙ୍କ ପାରମ୍ପରିକ 'ବାଘ ଶିକାର' ନୃତ୍ୟ ପରିବେଷଣ କରିବେ । ସେ ସବୁ ଦେଖିବାର ସୌଭାଗ୍ୟ ମୋର ହୋଇ ନଥିଲା । ମୋତେ ଫେରିବାକୁ ପଡ଼ିଲା ।

ସହରର ଉପକଣ୍ଠରେ ଆମ ଗାଡ଼ି ପୁଣି ଅଟକିଲା । ସାମନାରେ ଗୋଟିଏ କ୍ରସ ବାର ପକେଇ କେତେକ ନାଗା ରମଣୀ ଜଗିଚନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । ସେମାନେ ବସିବା ସ୍ଥାନରୁ ଉଠୁ ନାହାନ୍ତି କି ମୋ ଆଡ଼କୁ ଟିକିଏ ଆଡ଼ ନଜରରେ ମଧ୍ୟ ଅନେଇ ନାହାନ୍ତି । ମୁଁ କିଛି ସମୟ ଅପେକ୍ଷା କଲି ପରେ ଜଣେ ସେମାନଙ୍କ ଭିତରୁ ହାତ ଠାରି ସେମାନଙ୍କ ପାଖକୁ ଯିବାକୁ ନିର୍ଦ୍ଦେଶ ଦେଲେ ।

ମୋ ଭିତରେ ଗୋଟିଏ ଅଜଣା ଆଶଙ୍କା ଉଙ୍କି ମାରି ଉଠିଲା । ନାରୀ ମାନଙ୍କ ପ୍ରତି ମୋର ଭୟ ବରାବର ରହିଆସିଛି । ବାହାରେ ଯେତିକି ଘରେ ମଧ୍ୟ ସେତିକି । ସବୁ ପୁରୁଷଙ୍କର ସେ ଭୟ ଥାଏ କି ନା ମୁଁ ଜାଣେନା ।

ଅନିଚ୍ଛା ସତ୍ତ୍ୱେ ମୁଁ ଗାଡ଼ିରୁ ଓହ୍ଲାଇଲି । ଦୁଇ ହାତ ଯୋଡ଼ି ନମସ୍କାର କରି ହିନ୍ଦୀରେ ନିଜର ପରିଚୟ ଦେଲି । ସେମାନେ କାହିଁକି ହସିଲେ । କିଏ ସେମାନଙ୍କ ଭିତରୁ ଖଣ୍ଡେ କାଗଜ ଆଣି ମୋତେ ଦେଖେଇଲେ । ସେଥିରେ ଯାହା ଲେଖାଥିଲା ତାର ମର୍ମ ହେଉଛି, ନାଗାଲାଣ୍ଡ ସରକାର ମଦ୍ୟପାନକୁ ରାଜ୍ୟରେ ପୁରାପୁରି ନିଷେଧ କରିଛନ୍ତି । ନିଶାନିବାରଣ ନୀତିକୁ କାର୍ଯ୍ୟକାରୀ କରିବା ପାଇଁ ସ୍ୱେଚ୍ଛାସେବୀ ତଥା ମହିଳା ଅନୁଷ୍ଠାନମାନଙ୍କୁ କ୍ଷମତା ଦିଆଯାଇଛି । ସହରରୁ ଯାଉଥିବା ପ୍ରତ୍ୟେକ ଗାଡ଼ିକୁ ସେମାନେ ଯାଞ୍ଚ କରିବେ । କେବଳ ଆର୍ମିର ଗାଡ଼ିକୁ ସେଥିରୁ ବାଦ ଦିଆଯାଇଛି ।

ମୁଁ ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଦେଇ ପକେଇଲି । ମୁଁ ତ ବରାବର ସୁରାଠାରୁ ଅନେକ ଦୂରରେ । ଏଥିପାଇଁ ମୁଁ ଅନେକ ଥର ମୋର ବନ୍ଧୁ ମାନଙ୍କ ଦ୍ୱାରା ଭର୍ତ୍ସିତ ହୋଇଛି । ଅନେକଥର ଅପଦସ୍ଥ ମଧ୍ୟ ହୋଇଛି । ଠିକ ସମୟରେ ଏବଂ ଠିକ ସ୍ଥାନରେ ଯୋଗେଇ ନ ପାରି ଅନେକ କ୍ଷତି ମଧ୍ୟ ସହିଛି । ସେ ପରାଜୟକୁ ସ୍ୱୀକାର କରିଛି ।

ଏଠି କିନ୍ତୁ ମୋର ପରାଜୟର ପ୍ରଶ୍ନ ନଥିଲା । ମୁଁ ସଙ୍ଗେ ସଙ୍ଗେ ହାତ ଟେକି ଦେଲି ।

ସେମାନେ କଣ ଭାବିଲେ କେଜାଣି ମୋ ଗାଡ଼ିକୁ ସେମାନେ ଆଉ ଚେକ କଲେ ନାହିଁ । ଖାଲି "ନିରାମିଷାଶୀ" ଭାବି ଛାଡ଼ିଦେଲେ ।

ମୁଁ ଦେଖିଲି ଏହା ଏକ ଅଭିନବ ପନ୍ଥା । ମଦର ବେପାର ବିକ୍ରିଣୀକୁ ରୋକିବା ପାଇଁ ମହିଳା ଅନୁଷ୍ଠାନ ମାନଙ୍କୁ ଅଧିକାର ଦିଆ ଯାଇଛି । ପୁଲିସକୁ ଦିଆ । ହୋଇଥିଲେ କଅଣ ହୁଅନ୍ତା ସମସ୍ତଙ୍କୁ ଜଣା । ଏଥିରେ ଦୁର୍ନୀତି କମିବ ।

ମାଡ୍ରାସ ରେଳ ଷ୍ଟେସନରେ ରିଜରଭେସନ କାଉଣ୍ଟରରେ କେବଳ ନାରୀ ମାନଙ୍କୁ ରଖାଯାଇଛି । ସେଠି ଦୁର୍ନୀତି ମୋଟେ ନାହିଁ କହିଲେ ଚଳେ । ଯାତ୍ରୀ ମଧ୍ୟ ଅସୁବିଧାରେ ପଡ଼ନ୍ତିନି । ସେମାନଙ୍କ ବ୍ୟବହାର ମଧ୍ୟ ଆଦର୍ଶ ସ୍ଥାନୀୟ ।

—o—

# ଭୂମିକମ୍ପ ଦେଖିଲି

ଭୂମିକମ୍ପ କଅଣ ଦେଖିଛନ୍ତି ? ଦେଖିଛନ୍ତି । ଦେଖି ନ ହେବାର କୌଣସି କାରଣ ନାହିଁ । ଜୀବନରେ ଅନେକ ପ୍ରକାର କମ୍ପନ ଦେଖିଚି । ଅନୁଭବ କରିଚି ମଧ୍ୟ ।

ମଣିଷର ମନର କମ୍ପନ, ହୃଦୟର କମ୍ପନ । ଆଖିର କମ୍ପନ । ଓଠର କମ୍ପନ । ଏ ସବୁତ ଦେଖିଚି, ଅବଶ୍ୟ କେତେବେଳେ ବୁଝିଚି, ଆଉ କେତେକ ଅବୁଝା ହୋଇ ରହିଯାଇଛି ମଧ୍ୟ । ଆହୁରି ମଧ୍ୟ ଦେଖିଚି ମହାଭାରତର ନାରୀକୁ ( ଦ୍ରୌପଦୀ ) ଉଲଗ୍ନ କଲାବେଳେ ଅତ୍ୟାଚାରୀ ଦୁର୍ଯ୍ୟୋଧନ ଓ ଦୁଃଶାସନର ଶରୀର କମ୍ପନ, ଶକୁନିର ରାଜନୈତିକ ପଶାଖେଳ ବେଳେ ଅସହାୟ ଭାବେ ତାରିଦ୍ରୁ ଜନତା ପରି ହାରି ଯାଉଥିବା ପାଣ୍ଡବର ମାନସିକ ଯନ୍ତ୍ରଣାର କମ୍ପନ ଏବଂ ଅନ୍ଧ ଥିବା ରାଜା ଧୃତରାଷ୍ଟ୍ରର ରାଜସିଂହାସନ ପ୍ରତି ଥିବା ଅଦମ୍ୟ ଲାଳସାର କମ୍ପନ, ସବୁ ଦେଖିଚି । ସବୁ ଅନୁଭବ କରିଚି ଅତି ନିବିଡ଼ ଭାବେ ।

ତେଣୁ ଭୂମିକମ୍ପ ଦେଖିବାରେ ଭୁଲ କୋଉଠି ରହିଲା ? ଆଉ କେହି ଦେଖୁ ବା ନ ଦେଖୁ ମୁଁ ଦେଖିଚି । ଆଲୁଅ ଜାଳି ଦେଖିଚି । ତାକୁ ସ୍ପର୍ଶ କରିଚି, ଅନୁଭବ କରିଚି ମଧ୍ୟ ।

ଟୁଏନ୍‌ସାଙ୍ଗ୍ ନାଗାଲାଣ୍ଡର ଗୋଟିଏ ଅଖ୍ୟାତ ସହର । ସହର ମଧ୍ୟ କହିବା ଭୁଲ୍ ହେବ । କାରଣ ସହରଠୁ ଆହୁରି ଶ୍ରେଷ୍ଠ । ଲୋକସଂଖ୍ୟା କେତେ ହେବ କେଜାଣି । କାରଣ ଘରଗୁଡ଼ିକ ପାହାଡ଼ ଦେହରେ ଝୁଲି ହୋଇ ପଡ଼ିଥାଏ ଏଠି ସେଠି କାଁ ଭାଁ ହୋଇ । ପାହାଡ଼ ତଳେ ଠିଆ ହୋଇ ଉପରକୁ ଅନେଇଲେ ଡାଳ ଗଛର ବାଡ଼ି ଚଢ଼େଇ ବସା ପରି ଦିଶେ । ତେଣୁ ଠିକ୍ ଭାବେ ଗଣି ହୁଏନି ।

ସେଇ ସହରର ଗୋଟିଏ ପାଖକୁ କାଗଜ କଲଟିଏ । ଭାରତ ସରକାରଙ୍କର ପାଞ୍ଚଟି କାଗଜ କଳ ଭିତରୁ ଗୋଟିଏ । ନାଗାଲାଣ୍ଡର ଏକମାତ୍ର କାରଖାନା ଶ୍ରମିକ ସଂଖ୍ୟା ମାତ୍ର ବାରଶ' । ସେମାନଙ୍କ ଭିତରେ ଦୁଇଶ' ଅଫିସର । ଅଧିକାଂଶ ଶ୍ରମିକ ସ୍ଥାନୀୟ । ତା ଭିତରେ ପାଞ୍ଚଜଣ ଓଡ଼ିଆ ମଧ୍ୟ ଅଛନ୍ତି ।

କାରଖାନା ବନ୍ଦ ହୋଇ ପଡ଼ିଚି ପ୍ରାୟ ଦେଢ଼ବର୍ଷ ହେଲା । ଶ୍ରମିକମାନେ ଆସନ୍ତି, ବସନ୍ତି ଓ ଯାଆନ୍ତି । ସେମାନେ ନିୟମିତ ଦରମା ମଧ୍ୟ ପାଆନ୍ତି । ତା'ରି

ଭିତରେ ସେମାନେ ଦରମା ବଢ଼ିବା ପାଇଁ ଆନ୍ଦୋଳନ ମଧ୍ୟ କରନ୍ତି ଏବଂ ସଫଳ ମଧ୍ୟ ହୁଅନ୍ତି ।

ଗୌହାଟୀରୁ ଉତ୍ତରପୂବକୁ ମେନ ଲାଇନରେ ପଡ଼େ ଆମଗୁରି ରେଳ ଷ୍ଟେସନ । ସେଇ ରେଳ ଷ୍ଟେସନରୁ ଟୁଲି ପ୍ରାୟ ପଚାଶ କିଲୋମିଟର ଦୂର । ରାସ୍ତାର ଦୁଇ କଡ଼ରେ ବିସ୍ତୀର୍ଣ୍ଣ ଚା ବଗିଚା । ଗୁଆ ବଣ । ଗୁଆ ବଣ ଭିତରେ ଟାଇଲି ଘରର ସୌନ୍ଦର୍ଯ୍ୟ ଅତୁଳନୀୟ । ଛୋଟ ଛୋଟ କିନ୍ତୁ ରଙ୍ଗୀନ । ସବୁଗୁଡ଼ିକ ପ୍ରାୟ ସରୁ ସରୁ ବାଉଁଶ ପାଚିଆ ଦେହରେ ସିମେଣ୍ଟ ଓ ବାଲିର ପ୍ରଲେପ । ତା' ଉପରେ ଚୂନ ଦେଇ ରଙ୍ଗ ଦିଆଯାଏ । ପ୍ରାୟ ସବୁ ଘରର ଭିତ୍ତି ଟିଣରେ । ତଳେଇ ଗୁଡ଼ିକର ଘର ଅନେକ କମ୍ । କେବଳ ଭୂମିକମ୍ପ ଯୋଗୁଁ । ଦୋହଲି ଯିବ ପଛକେ, ଭାଙ୍ଗିବ ନାହିଁ ।

ଲୋକେ କହନ୍ତି ଟୁଲି କାଗଜ କଲର ଭାଗ୍ୟରେ ସୁଦିନ କେବେ ଆସିନାହିଁ କି ଆସିବନି । କୁହାଯାଏ ଯୋଉଦିନ କାରଖାନାର ମୂଳଦୁଆ ଦିଆଗଲା ସେଇଦିନ କୁଆଡ଼େ ସେଠି ଭୂମିକମ୍ପ ହୋଇଥିଲା । ନାଗାମାନେ ଆମ ସମସ୍ତଙ୍କ ପରି ବଡ଼ ଭାଗ୍ୟବିଶ୍ୱାସୀ । ସତକୁସତ ସେ କାରଖାନାର ଜନ୍ମ ଏବଂ ଜୀବନୀ ଆଲୋଚନା କଲେ ଏ ବିଶ୍ୱାସ ଆପେ ଆପେ ଦୃଢ଼ୀଭୂତ ହୁଏ ।

୧୯୬୭ ମସିହାରେ କାରଖାନା ପ୍ରଥମେ ମାତ୍ର ଅଠର କୋଟି ଟଙ୍କାରେ ହେବ ବୋଲି ଠିକ୍ ହୋଇଥିଲେ ମଧ୍ୟ ରାଜନୈତିକ ଝଡ଼ଝଞ୍ଜା ଭିତରେ ଗତି କଲା ପରେ ପ୍ରାୟ ଦଶ ବର୍ଷ ପରେ ତାର କାମ ସରିଲା ବେଳକୁ ଖର୍ଚ୍ଚ ହୋଇଥାଏ ୮୭ କୋଟି ଟଙ୍କା । ତା'ପରେ ଆରମ୍ଭ ହୁଏ ବିପର୍ଯ୍ୟୟ । ଆଜି ଭୂମିକମ୍ପ ତ କାଲି ବିଦ୍ୟୁତ ପରିବହନ ବନ୍ଦ । ତା' ପରଦିନ ଶ୍ରମିକ ଅଶାନ୍ତି । ତା' ପରଦିନ ରାଜନୈତିକ ଆନ୍ଦୋଳନ ଇତ୍ୟାଦି ଇତ୍ୟାଦି । ଦିନକୁ ପଚାଶ ହଜାର ଟନ୍ କାଗଜ ଉତ୍ପାଦନ କରି ପାରୁଥିବା କାରଖାନା ଏବେ ଦେଉବର୍ଣ୍ଣ ହେଲା ପାହାଡ଼ ଘେରା ଘୋର ଜଙ୍ଗଲ ଭିତରେ ଶୋଇ ଶୋଇ ହାଇ ମାରୁଛି ।

୧୯୯୦ ମସିହା ଜାନୁଆରୀ ୧୧ ତାରିଖ ରାତି ୧୨-୨୫ମିନିଟ୍ । ରାତି ସାରା ରେଳଯାତ୍ରା ଓ ଜିପ୍‌ରେ ଆସିବା ପରେ ମୁଁ ସେଦିନ ଟିକିଏ ସଅଳ ଖାଇପିଇ ଶୋଇ ପଡ଼ିଥାଏ । କାଗଜ କଲର ଅତିଥି ନିବାସଟି ପ୍ରାୟ ତିନିହଜାର ଫୁଟ ଉଚ୍ଚ ପାହାଡ଼ ଉପରେ । ପାହାଡ଼ ଉପରେ ଛିଡ଼ା ହେଲେ ତଳେ କାରଖାନାର ମନୋରମ ଦୃଶ୍ୟ ଯେ ଥରେ ଦେଖିବ ଜୀବନ ଯାକ ଭୁଲି ପାରିବନି । ସକାଳର ସୂର୍ଯ୍ୟୋଦୟ ଆହୁରି ମନୋରମ । ପାହାଡ଼ର କାନ ପାଖରୁ ଉଠି ଆସିଲା ବେଳକୁ ଆକାଶର ଦେହଟା ନାଲି ରଙ୍ଗ ମାଖି ହୋଇଯାଇଥାଏ । ପାହାଡ଼ ଦେହରେ କୁହୁଡ଼ିର ଧଳା

ଘୃଦର । କମ୍ପା ଖର୍ଣ୍ଣିକଥା ମେଘର ସ୍ତୂପ । ଆଖି ଲାଖି ଯାଏ । ଦେଖୁଥିବା ଲୋକ ତାର ଅସ୍ତିତ୍ୱ ମଧ୍ୟ ଭୁଲିଯାଏ ।

ମୋ ନିଦ ଭାଙ୍ଗିଗଲା ଗୋଟାଏ ଖଡ଼ଖଡ଼ ଶବ୍ଦରେ । ମୁଁ ଉଠି ପଡ଼ିଲି । ଦେଖିଲି ମୋ ଖଟ ସାମାନ୍ୟ କମ୍ପୁଛି ଏବଂ କଡ଼କଡ଼ ଶବ୍ଦ ମଧ୍ୟ ହେଉଛି । କୁକୁର କି ବିଲେଇଟିଏ ପଶି ଆସିଥିବ ଭାବି ବେଡ଼୍ ଲାଇଟ ଜଳେଇଲି ।

ବାଥ୍‌ରୁମ୍‌ରେ କିଛି ଗୋଟାଏ ପଡ଼ିବାର ଶବ୍ଦ । ସାବୁନକେଶ୍ ପରି ଲାଗିଲା । ମୁଁ ଚମକି ପଡ଼ିଲି । ମଶାରି ଟେକି ଦେଖିଲି ବାଥରୁମ୍‌ର କବାଟ ଆପେଆପେ ଖୋଲି ଯାଉଛି । କେଁ କଟର ଶବ୍ଦ ଖୁବ୍ ଜୋର ଶୁଭୁଛି ।

ବାଥରୁମ୍ ଭିତରେ ଭୂତର ତାଣ୍ଡବ ନୃତ୍ୟ । ବେଡ଼ରୁମ୍ ଲାଇଟରେ ପରିଷ୍କାର ଦେଖାଯାଉଥାଏ । ପାଣି ଭର୍ତ୍ତିଥିବା ବାଲ୍‌ଟିଟା ଧୀରେ ଧୀରେ ଘୂରିବାକୁ ଆରମ୍ଭ କଲାଣି । ସେଥିରୁ ପାଣି ଚହଲି ତଳେ ପଡ଼ୁଛି । ତଳେ ଖସି ପଡ଼ିଥିବା ସୋପ୍‌କେଶ, ସାବୁନ୍, ଟୁଥ ବ୍ରସ ଓ ପେଷ୍ଟ ଆପେଆପେ ନାଚିବାକୁ ଆରମ୍ଭ କଲେଣି ।

ହଠାତ୍ କେଁ କରି ଗୋଟାଏ ଶବ୍ଦ । ଉପରକୁ ଅନେଇଲି । ଫ୍ୟାନ୍‌ଟା ଦୋଳି ଖେଳୁଛି । ମୋ ଖଟ ଆହୁରି ଜୋରରେ କମ୍ପିବାକୁ ଲାଗିଲା । ଗୋଟାଏ ଚଳନ୍ତା ରେଳଗାଡ଼ିରେ ଶୋଇଥିଲା ପରି ମୋତେ ଲାଗିଲା । ମୁଁ ଆଉ ସମ୍ଭାଳି ପାରିଲିନି ।

କି ଆଶ୍ଚର୍ଯ୍ୟ ? ମୋ ଚପଲ କୁଆଡ଼େ ଗଲା । ଦେଖିଲା ବେଳକୁ ଖଟର ଅନ୍ୟ ପାଖରେ ପହଞ୍ଚି ସାରିଲାଣି ।

ମୁଁ ଠିଆ ହେବାକୁ ଚେଷ୍ଟା କଲି । ତା ମଧ୍ୟ ସମ୍ଭବ ନୁହେଁ । ଅଫିମ ଖାଉଥିଲା ପରି ଲାଗିଲା । ଖଟର ବାଡ଼ ଧରି ଠିଆ ହେବାକୁ ଚେଷ୍ଟା କଲାବେଳକୁ ବାଡ଼ଟା ଭାଙ୍ଗିଗଲା । ଅଗତ୍ୟା ସୋଫା ଉପରେ ବସିବାକୁ ଯାଉଥିଲା ବେଳେ ଦେଖିଲି କୋଟ୍‌ଟା ଆଲମାରୁ ତଳକୁ ଖସି ପଡ଼ିଛି ।

ଏତିକିବେଳେ ବାହାରେ ଦରଜାରେ ଘନଘନ କରାଘାତ ଶୁଭିଲା । କେହି ଜଣେ ପାଟି କଲେ ମିଷ୍ଟର ମହାପାତ୍ର ବାହାରି ଆସନ୍ତୁ ।

ମୁଁ ଆଶ୍ୱସ୍ତ ହେଲି । କୋଟଟାକୁ ଜାବୁଡ଼ି ଧରି ଦୌଡ଼ି ଆସିଲି ବାହାରକୁ । ଗେଷ୍ଟ ହାଉସର ସମସ୍ତେ ସେତେବେଳକୁ ବାହାରକୁ ଆସି ଯାଇ ଥାଆନ୍ତି । ପରଦିନ କାଗଜରେ ଦେଖିଲି ସାମାନ୍ୟରୁ ମଧ୍ୟମ ଧରଣର ଭୂମିକମ୍ପର ପରମାୟୁ ଥିଲା ମାତ୍ର ଚାଳିଶ ସେକେଣ୍ଡ । ଧନ ଜୀବନର ହାନି ଖବର ମିଳିନାହିଁ ।

ଜଣେ ବନ୍ଧୁଙ୍କୁ ପଚାରିଲି ତେବେ ବଡ଼ ଧରଣର ଭୂମିକମ୍ପ କେମିତି ହୁଏ ।

କେମିତି ହୁଏ ଦେଖିବେ ? ସେ କହିଲେ । କାରଖାନାର ସେ ବିଶାଳକାୟ ଖମ୍ବ ଗୁଡ଼ିକ ଦେଖନ୍ତୁ, କେମିତି କାଣ୍ଡ ପରି ବଙ୍କେଇ ଯାଇଛି । ସେଠି ସେ ବଏଲର ଦେଖନ୍ତୁ, କେମିତି ଫାଟି ଯାଇଛି । ଆଉ ସେ ମେସିନର ମୂଳଦୁଆ ଦେଖନ୍ତୁ, କେମିତି ଦବି ଯାଇଛି । ଆଉ ସେ ଝେନଟାକୁ ଦେଖନ୍ତୁ କେମିତି ଧାରଣା ଛାଡ଼ି ତଳକୁ ଝୁଲି ରହିଛି ।

ଏସବୁ ଘଟିଥିଲା ୧୯୮୮ ମସିହା ଅଗଷ୍ଟ ଛଅ ତାରିଖରେ । ସେଇ ଦିନୁ ଏ କାରଖାନା ଆଉ ଚାଲି ପାରୁନି । ଏବେ ଆସ୍ତେ ଆସ୍ତେ ମରାମତି ଚାଲିଛି । ନିକଟରେ କାରଖାନା ଚାଲିବ ।

—o—

# ମେଘ ଘରେ ବନ୍ଦୀ

ସେଦିନ ଥିଲା ନଭେମ୍ବରର ଗୋଟାଏ ଶିଶିର ଧୂଆଁ ସକାଳ । ବେଶ ମେଞ୍ଚାଏ ବହଳ ଶୀତ ପଡ଼ି ଆସିଲାଣି । ସକାଳ ୯ଟାରେ ସ୍ୱେଟର କମ୍ବଳ ଘୁଡ଼ାଇ ଘୋଡ଼ି ହେବାକୁ ପଡ଼ୁଥାଏ । ଆମେ କେଇଜଣ ବାହାରି ପଡ଼ିଲୁ ମୁଁ, ମୋ ସ୍ତ୍ରୀ ଓ ସାନଝିଅ ।

ଆମର ଯାତ୍ରା ଆରମ୍ଭ ହେଲା ଗୌହାଟୀର ସେଇ Indian Oil Companyର ଗେଷ୍ଟ ହାଉସରୁ । ସାମାନ୍ୟ କିଛି ଜଳଖିଆ ଖାଇ ଆମେ ବାହାରି ପଡ଼ିଲୁ । ଏଥରର ଯାତ୍ରା ଥିଲା ମେଘାଳୟର ରାଜଧାନୀ ଶିଲଂ ସହରକୁ । ସାଥିରେ ଥିଲେ ଜଣେ ଗାଇଡ଼ । ସେ CISFରେ କାମ କରନ୍ତି କିନ୍ତୁ ତାଙ୍କ ଘର ଶିଲଂରେ ।

ଗୌହାଟୀରୁ ଶିଲଂ ଶହେ କିଲୋମିଟର ଭିତରେ । କିନ୍ତୁ ସେତିକି ରାସ୍ତା ଯିବାକୁ ଆମକୁ ତିନି ଘଣ୍ଟାରୁ ବେଶୀ ସମୟ ଲାଗିଲା । ତାର କାରଣ ସମଗ୍ର ରାସ୍ତାଟା ପାହାଡ଼ ଉପରେ ଚକ୍କର କାଟି କାଟି ଉପରକୁ ଉଠିବାକୁ ହୁଏ ।

ଶିଲଂ ସମୁଦ୍ର ପତନର ପ୍ରାୟ ୭ ହଜାର ଫୁଟ ଉପରେ । ଦାର୍ଜିଲିଂ ଏବଂ ମଶୋରୀର ଉଚ୍ଚତା ମଧ୍ୟ ପ୍ରାୟ ସେତିକି । ତେଣୁ ବେଶ ଶୀତ ହୁଏ ନଭେମ୍ବରରେ ।

ଆମ ଗାଡ଼ି ଗଡ଼ି ଚାଲିଲା । ଦୁଇ କଡ଼ରେ ପାହାଡ଼ । ଗୌହାଟୀ ସହର ପାରହେଲେ ଏ ସବୁ ଆଖିରେ ପଡ଼େ । ସେ ପାହାଡ଼ରେ ଗଛ ନଥାଏ । ଢିମା ଢିମା ପଥର ନଥାଏ, ଥାଏ ଖାଲି ନରମ ମାଟିର ପାହାଡ଼ ଏବଂ ପାହାଡ଼ ଭର୍ତ୍ତି ସପୁରୀ ଗଛ । ଗଛ ଭର୍ତ୍ତି ଲାଲ ଟକଟକ ସପୁରୀର କେଣ୍ଡା । ଦେଖିଲେ ଆଖି ଖୋସି ହେଇଯାଏ ।

ତାପରେ ଆମ ଗାଡ଼ି ମାଡ଼ିଯାଏ । ଘଣ୍ଟାରେ ଚାଳିଶ କିଲୋମିଟରରୁ ବେଶୀ ଗତିରେ ଆଗେଇ ପାରେନି । ସାପ ବଙ୍କାରାସ୍ତା । ରାସ୍ତାରେ ଗାଡ଼ିର ପ୍ରବଳ ଭିଡ଼ । ଶହ ଶହ ଟୁରିଷ୍ଟ ବସ, କାର, ଟ୍ରେକର, ମିନିବସ ଗଣି ହୁଏନା ।

ପ୍ରାୟ ଘଣ୍ଟାଏ ପରେ ଆମେ ପହଞ୍ଚିଲୁ ନାଙ୍ଗୋପ ସହରରେ । ସହର କହିଲେ ଭୁଲ ହେବ । ତେବେ ଗ୍ରେଟ ସହର ବୋଲି କୁହା ଯାଇ ପାରେ । କିନ୍ତୁ

କ ସୁନ୍ଦର । ଚକ୍‌ଚକ୍ କରୁଚ ଯେମିତ । ସବୁ ଟୁରିଷ୍ଟ ଗାଡ଼ି ଯେଉଁଠି ଅଟକେ । ଯାତ୍ରୀମାନେ ଚା ଜଳଖିଆ ଖାଆନ୍ତି । ତା ଛଡ଼ା ସେଠି ମିଳେ ପ୍ରଚୁର ମହୁ ଓ ଫଳ । ଫଳ ଦୋକାନ ଦେଖିଲେ ଯେମିତ ପେଟ ପୂରିଯାଏ । ଦୋକାନ ଓ ରାସ୍ତା କଡ଼ରେ ଶହ ଶହ ବୋତଲ ମହୁ ବିକ୍ରି ହେଉଥିବାର ଦେଖିଲେ ସେଠାକୁ ଆଶ୍ଚର୍ଯ୍ୟ ହେବାକୁ ହୁଏ । ମନେ ମନେ ଭାବିଲି ମେଘାଳୟ କେବଳ ମେଘର ଆଳୟ ନୁହେଁ ମହୁର ମଧ । ଅପୂର୍ବ ସମନ୍ୱୟ । ମନେ ହେଲା ପ୍ରକୃତ ଯେମିତ ସେଠି ତାର ସବୁ କିଛି ଅଜାଡ଼ି ଦେଇଚ ।

ବବ୍‌ଙ୍କ ସାଉଥ ଇଣ୍ଡିଆନ କେଣ୍ଟିନଟିଏ ଆଖିରେ ପଡ଼ିଲା । ମନେ ମନେ ଭାବିଲି ଏମାନେ ଏଠି ମଧ ଆସର ଜମେଇ ବସିଲେଣି । ଇଡ଼ଲି ଓ ଦୋସା ପ୍ରତ ଝୋଲ ମୋର ନୁହେଁ ସମସ୍ତଙ୍କର ଅଦମ୍ୟ ଲୋଭ । ତାର ଆଦର ଏବେ ଯେମିତ ବଢ଼ି ଚାଲିଚ ମୋର ମନେ ହୁଏ ଅଉ କିଛି ଦିନ ପରେ ତାକୁ ଦେଶର "ଜାତୀୟ ଜଳଖିଆ'' ହିସାବରେ ଧରାଯିବ ।

ଆମେ ସମସ୍ତେ କେଣ୍ଟିନର ବାରଣ୍ଡା ଉପରକୁ ଉଠିଗଲୁ । ଗୋଟାଏ ଛୋଟ ସାମାନ୍ୟ ତଥା ସମ୍ଭ୍ରାନ୍ତ ଜଳଖିଆ ଦୋକାନ । ଇନଷ୍ଟାଣ୍ଟ ଚା ଓ କଫିର ବ୍ୟବସ୍ଥା ମଧ ଅଛି । ଫଳରସ ମଧ ମିଳୁଚ । ଯିଏ ଯୋଉ ଫଳର ରସ ଚାହିଁବା ସଙ୍ଗେ ସଙ୍ଗେ ତିଆରି ହେବ । ଆମେ ତନିଜଣ । ସେ ଡ୍ରାଇଭର ଓ ଗାଇଡ଼ଜଣକ ଆମ ସାଥିରେ ନଖାଇ ଅନ୍ୟ ଗୋଟିଏ ଦୋକାନକୁ ଗଲେ ।

ଗୋଟିଏ ଗୋଟିଏ ମସଲା ଦୋସା ଏବଂ ଯୋଡ଼ାଏ ଲେଖାଏଁ ଇଡ଼ଲି ସହିତ ଚା କପେ ଖାଇ ସାରିଲା ବେଳକୁ ଆମ ଟେବୁଲ ଉପରେ ୭୭ ଟଙ୍କାର ବିଲଟିଏ ଦାନ୍ତ ଦେଖେଇ ହସିବାକୁ ଆରମ୍ଭ କଲା । ମୋ ଆଖି ଚାରିପାଖେ ଜୁଳୁଜୁଳିଆ ପୋକ ଖେଳିବାକୁ ଆରମ୍ଭ କଲେ । ପଳେଇବାର ଉପାୟ ନାହିଁ । ପର୍ସରୁ ଶହେ ଟଙ୍କିଆ ନୋଟଟେ ନେଇ ଥୋଇ ଦେଇ କାନମୁଣ୍ଡାର ଉତ୍ତାପ ମାପିବାକୁ ଚେଷ୍ଟା କଲି । ବୟ ଆଣି ବାକି ଖୁଚୁରା ରଖିଦେଲା । ମୁଁ ଖୁଚୁରାତକ ଉଠାଇ ନେଲାବେଳେ ପାଞ୍ଚ ଟଙ୍କିଆ ନୋଟଟେ ଥରଥର ହାତରେ ପ୍ଲେଟ୍ ଉପରେ ଛାଡ଼ିଦେଲା ବେଳକୁ ବୟ ସେଇଟାକୁ କ୍ଷିପ୍ର ଗତରେ ଉଠେଇ ନେଇ ଚାଲିଗଲାବେଳେ ଗୋଟାଏ ଅଭ୍ୟାସ ଓଠରୁ 'ଥେଙ୍କ ୟୁ ସାର' ଶବ୍ଦ କେତୋଟି ଫୋପାଡ଼ି ଦେବାକୁ ଭୁଲି ନଥିଲା । ତାକୁ ତ ମୋ ଅପେକ୍ଷା ଆହୁରି ଅନେକ ବଡ଼ ବଡ଼ ଗ୍ରାହକଙ୍କୁ ଆଟେଣ୍ଡ କରିବାକୁ ପଡ଼ିବ ।

ଆମେ ଆଗେଇଲୁ । ଶିଲଂ ସହରରେ ପହଞ୍ଚିଲା ବେଳକୁ ଦିନ ୧୧ଟା ହୋଇ ଯାଇଥାଏ । ରାସ୍ତାରେ ପଡ଼େ ଉମିଆମ ହ୍ରଦ । ଏ ହ୍ରଦର

ସୌନ୍ଦର୍ଯ୍ୟରେ ସ୍ୱାତନ୍ତ୍ୟ ରହିଚ । ଦୁଇ ଦଗରେ ନୀଳ ପାହାଡ଼ । ତଳେ ହ୍ରଦ ସାପ ପର ବଙ୍କେଇ ବଙ୍କେଇ ଲମ୍ୱି ଯାଇଚ ଅନେକ ଦୂରକୁ । ଆଖି ପାଏନ ।

ଆମେ ବେଶ୍ କେତେ ସମସ୍ତ ସେଠି ମୁଗ୍ଧ ହୋଇ ଅଟକ ଗଲୁ । ହ୍ରଦ ଜଳ ମଧ୍ୟ ବେଶ୍ ପରିଷ୍କାର । ସ୍ଥାନେ ସ୍ଥାନେ ସିମେଣ୍ଟ ବେଞ୍ଚ ଟୁରିଷ୍ଟମାନଙ୍କ ପାଇଁ । ହ୍ରଦରେ ରହିଚ କେତୋଟି ସୁନ୍ଦର ବୋଟ୍ । ସେଥିରେ ଦୁଇ ମହଲା କୋଠା । ଟୁରିଷ୍ଟଙ୍କ ଭିଡ଼ ସବୁଠୁ ବେଶୀ ସେଇଠି । ହ୍ରଦ ଭିତରେ ଅନେକଗୁଡ଼ିଏ ହଂସ । ଶୁଣିଲି ସେଗୁଡ଼ିକ ସରକାରଙ୍କ ତରଫରୁ ପୋଷା ଯାଇଚ ଭ୍ରମଣକାରୀଙ୍କୁ ଆକୃଷ୍ଟ କରିବା ପାଇଁ । ସତରେ ବୋଟ ପାଖରେ ଏଗୁଡ଼ିକ ଶହ ଶହ ସଂଖ୍ୟାରେ ପହଁରୁ ଥିବାର ଦେଖିଲେ ମଣିଷ ଭେକ ଶୋଷ ଭୁଲିଯିବ । ବଡ଼ାପାନୀ ହ୍ରଦର ଦୃଶ୍ୟ ମଧ୍ୟ କମ୍ ମନୋରମ ନୁହେଁ । ଶିଲଂ ଯିବାକୁ ହେଲେ ବଡ଼ାପାନୀ ହ୍ରଦ ଉପର ଦେଇ ଯିବାକୁ ହେବ । ସେ ପୋଲ ଉପର ଦେଇ ଯିବାକୁ ହେବ । ସେ ପୋଲ ଉପର ଦେଇ ଗାଡ଼ି ଯାଉଥିଲା ବେଳେ ଦକ୍ଷିଣ ଭାରତର ରାମେଶ୍ୱର ପୋଲ କଥା ମନେ ପଡ଼େ । ଟୁରିଷ୍ଟମାନଙ୍କୁ ଆକର୍ଷଣ କରିବା ପାଇଁ ସେଠି ଗୋଟିଏ ଗଛ ଉପରେ ଘରଟିଏ ତିଆରି ହୋଇଚ । ଉପରକୁ ଉଠିବାକୁ ସିଢ଼ି ବ୍ୟବହାର କରାଯାଏ । ସିଢ଼ିଟି ଠିକ ପାହାଚ ଭଳି । ସମ୍ପୂର୍ଣ୍ଣ ନିରାପଦ । ଗୋଟିଏ ବକ୍ସୁରିକଆ ଘର ମଣିଷ ରହିବା ପାଇଁ ନୁହେଁ, କେବଳ ଦେଖିବା ପାଇଁ । ତାର ସାଜସଜ୍ଜା ବି ଦର୍ଶନୀୟ ।

ଶିଲଂକୁ ଅନେକଗୁଡ଼ିଏ ହ୍ରଦ ଓ ପ୍ରପାତର ସହର ବୋଲି କୁହାଗଲେ ହେବନି । ଓ୍ୱାର୍ଡସ ଲେକ୍, ଓମିଆମ ଲେକ୍ ଓ ବଡ଼ାପାନୀ ଲେକ୍ ସାଙ୍ଗକୁ ସେଠି ଅଛୁ ବିଡ଼ନ ଫଲସ୍, ସୁଇଟ ଫଲସ୍ ଏବଂ ଏଲିଫେଣ୍ଟ ଫଲସ୍ ।

ଓ୍ୱାର୍ଡସ ଲେକ ପାଖରେ ଅଛି ବୋଟାନିକାଲ ଗାର୍ଡେନ ଯାହାକୁ ସାଧାରଣତଃ Lovers Paradise ବୋଲି କୁହାଯାଏ । ଏହି ବୋଟାନିକାଲ ଗାର୍ଡେନ ଭିତରେ ୯୦୦ ପ୍ରକାର ଗଛବୃକ୍ଷ ଅଛି ବୋଲି କୁହାଯାଏ । ସତକୁ ସତ ଏ ଗାର୍ଡେନ ଭିତରକୁ ଗଲେ ଏଇଟା ଭାରତର ଏକ ଅଂଶ ବୋଲି ମୋଟେ ମନେ ହୁଏନା । ହରେକ କିସମର ଦେଶୀ ଓ ବିଦେଶୀ ଫୁଲ ଫଳରେ ଭର୍ତ୍ତି । ସାଜସଜ୍ଜା ମଧ୍ୟ ଅତି ଉନ୍ନତ ଧରଣର । କଲିକତା ବୋଟାନିକାଲ ଗାର୍ଡେନ ଅପେକ୍ଷା ଅଧିକ ସୁନ୍ଦର ମନେହେଲା ।

ତାପରେ ଆମେ ଆସିଲୁ ହାଇଦରୀ ପାର୍କ ପାଖକୁ । ଏ ପାର୍କର ନାମ କାହିଁକି ହାଇଦରୀ ରଖା ଯାଇଚ ମୁଁ ବୁଝି ପାରିଲିନି । ଶିଲଂର ଅଧିକାଂଶ ସ୍ଥାନର ନାମ ଅନେକାଂଶରେ ଇଂରେଜ ନାମ ପରି ମନେ ହୁଏ । କେବଳ

ଏଇ ନାମଟିରେ ବ୍ୟତକ୍ରମ ଦେଖିଲି । ପାର୍କର ସୌନ୍ଦର୍ଯ୍ୟ ବୋଧେ ଅନେକ ଲୋକଙ୍କୁ ସେଠାକୁ ଟାଣି ଆଣୁଥିଲା । ହାଇଦରା ପାର୍କ ପାଖକୁ ଲାଗି ରହିଚ ଗୋଟିଏ ଶ୍ରେଷ୍ଠ ଚିଡ଼ିଆଖାନା ଏବଂ ଗୋଟିଏ ଚିଲଡ୍ରେନ୍ସ ପାର୍କ । ଶିଶୁମାନଙ୍କର ମାନସିକ ସ୍ୱାସ୍ଥ୍ୟର ଉତ୍ତମ ଗଠନ ପାଇଁ ଚିଡ଼ିଆଖାନା ଓ ପାର୍କର ଆବଶ୍ୟକତା ଅପରିହାର୍ଯ୍ୟ ।

ଅନେକ ଦିନ ପରେ ରାଉରକେଲାରେ ଗୋଟିଏ ଡିଅର ପାର୍କ ହେଉଥିବାର ଦେଖିଲି । ଖୁସି ଲାଗିଲା । କିନ୍ତୁ ସେଇଟା **Dear Park** କି **Deer Park** ଠିକ୍ ଭାବେ ବୁଝି ହେଲାନି । ଯୋଉ ପାର୍କ ହେଉନା କାହିଁକି ସେଠି **Deer** କିମ୍ବା **Dear** ମାନଙ୍କ ପାଇଁ ଉପଯୁକ୍ତ ଖୋରାକ ନଥିଲା ।

ଓଡ଼ିଶାରେ ବୋଧେ ପାର୍କ ଓ ଚିଡ଼ିଆଖାନାର ଆବଶ୍ୟକତା ଏଯାଏ ଭଲଭାବେ ଉପଲବ୍ଧ ହୋଇନାହିଁ । କାରଣ ମୋ ଜାଣିବାରେ ଓଡ଼ିଶାର କୌଣସି ସମ୍ଭ୍ରାନ୍ତ ସହରରେ ଭଲ ପାର୍କଟିଏ ନାହିଁ । ବରଂ ଯାହାଅଛି ବା ଥିଲା ତାହା ଅଯତ୍ନେ ଆସ୍ତେ ନଷ୍ଟ ହେଇ ଯାଉଛି ଯତ୍ନ ଓ ଆନ୍ତରିକତା ଅଭାବରୁ ।

ରାଉରକେଲାର ଇନ୍ଦିରା ଗାନ୍ଧୀ ପାର୍କ କଥା ଧରାଯାଇ ପାରେ । ଅସ୍ତୁରି ଦଶକର ପ୍ରଥମ ଭାଗରେ ଯୋଉମାନେ ଏ ପାର୍କକୁ ଦେଖିଛନ୍ତି ସେମାନେ ନିଶ୍ଚୟ କହିବେ "କି ଥିଲା ଏ ରାଜ୍ୟ କି ହୋଇଚି ଆଜ ।" ତାର ଶ୍ରେଷ୍ଠ ଚିଡ଼ିଆଖାନ, ଗୋଲାପ ବଗିଚା, ଟଏ ଟ୍ରେନ୍, ଝରଣା ଏ ଯାଏ ଆମ ମନରୁ ପାଶୋରି ଯାଇନି ।

ରାଉରକେଲା ଠାରୁ ମାତ୍ର ଦୁଇ ଶହ କିଲୋମିଟର ଦୂରରେ ବ୍ୟକ୍ତିଗତ ମାଲିକାନାରେ ଟାଟା କମ୍ପାନୀର ସେଣ୍ଟିନାରି ପାର୍କ ପ୍ରାୟ ଅନେକେ ଦେଖିଥିବେ । ଫରକ କଥା ଆଉ କହିବା ଦରକାର ନାହିଁ ।

ରାଉରକେଲାରେ ଅନେକ ସ୍ଥାନ ରହିଚି ଯୋଉଠି ସୁନ୍ଦର ପାର୍କଟିଏ ହେଇ ଟୁରିଷ୍ଟ ମାନଙ୍କୁ ଆକର୍ଷିତ କରାଯାଇ ପାରିବ । ଟୁରିଷ୍ଟ ନ ହେଲେ ମଧ୍ୟ ସ୍ଥାନୀୟ ବାସିନ୍ଦାମାନଙ୍କୁ ଛୁଟି ଦିନମାନଙ୍କରେ ସାମାନ୍ୟ ମାନସିକ ପରିବର୍ତ୍ତନ ପାଇଁ ଖାଦ୍ୟ ଦିଆଯାଇ ପାରିବ ।

ତା ଭିତରୁ ମନ୍ଦିରା ଡେମ୍, ମନୋହରପୁର । ଓ୍ୱାଟର ଓ୍ୱାର୍କସ ଏବଂ ଛିଉପାଣି ଅଞ୍ଚଳରେ ଅନେକ ସ୍ଥାନ ରହିଛି । ୬ ନମ୍ବର ସେକ୍ଟର ପାହାଡ଼ ଉପରେ ମଧ୍ୟ ପ୍ରଶସ୍ତ ସ୍ଥାନ ରହିଛି । ସେଠି ପାର୍କଟିଏ ହେଲେ ଅତି ସୁନ୍ଦର ହୁଅନ୍ତା । ପିଲାମାନଙ୍କୁ ଆକର୍ଷିତ କରିବାକୁ ସେଠି ରୋପ୍ ୱେ ମଧ୍ୟ କରାଯାଇ ପାରେ । ବ୍ୟାବସାୟିକ ଦୃଷ୍ଟିରୁ ମଧ୍ୟ ହେଉ । ଆପତ୍ତି ନାହିଁ । ମୋର ମନେହୁଏ ଲାଭଜନକ ହେବ ।

ଆଧୁନିକ ଜଗତରେ ପାର୍କ ଏକ ବିଳାସ ନୁହେଁ—ଏକ ଆବଶ୍ୟକତା ।

ତେବେ ସେ ଯା ହେଉ, ଶିଲଂର ପାର୍କ ଚିଡ଼ିଆଖାନା, ରାସ୍ତାଘାଟ, ବଜାର, ଖେଳପଡ଼ିଆ ବିଶେଷ କରି ଗଲ୍ଫ ପଡ଼ିଆ ଇତ୍ୟାଦି ଦେଖିଲେ ସେଠା ଲୋକଙ୍କର ସାଂସ୍କୃତିକ ତଥା ସାମାଜିକ ସଚେତନତା କଥା ମନକୁ ଆସେ ।

ସମଗ୍ର ମେଘାଳୟ ଘନ ପାର୍ବତ୍ୟାଞ୍ଚଳ ହୋଇ ଥିବାରୁ ସେଠି ବେଶୀ ଭାଗ ପାହାଡ଼ିଆ ଜାତି ବାସ କରନ୍ତି । ଉତ୍ତର ପୂର୍ବାଞ୍ଚଳର ଅଧିକାଂଶ ରାଜ୍ୟ ସେମିତି । ତେଣୁ ଇଂରେଜମାନଙ୍କର ଆସିବା ପରେ ସେଠି ଖ୍ରୀଷ୍ଟାନ ଧର୍ମ ପ୍ରସାର ଲାଭ କରିଚି ।

୧୯୯୦ରେ ଭାରତର ଉତ୍ତର ପୂର୍ବାଞ୍ଚଳର ରାଜ୍ୟମାନଙ୍କରେ କାଥଲିକ ଚର୍ଚ୍ଚ ମାନେ ସେମାନଙ୍କର ଶହେ ବର୍ଷର ପୂର୍ତ୍ତି ଉତ୍ସବ ପାଳନ କରିଛନ୍ତି । ଏଇଟା କେବଳ କାଥଲିକ ଚର୍ଚ୍ଚମାନଙ୍କ କଥା । କିନ୍ତୁ ଇତିହାସ ଦେଖିବାକୁ ଗଲେ ଖ୍ରୀଷ୍ଟଧର୍ମ ଏ ଅଞ୍ଚଳରେ ୧୮୯୦ର ଯଥେଷ୍ଟ ପୂର୍ବରୁ ଆସି ସାରିଥିଲା । ସଂକ୍ଷେପରେ ମୁଁ ମୋର ନାଗାଲାଣ୍ଡ ଅଧ୍ୟାୟରେ ଏସବୁ ଲେଖି ସାରିଚି ।

—o—

# ମେଘାଳୟ୍ସ ସମ୍ପର୍କରେ

ଆଗରୁ କହିଛି ଭୌଗୋଳିକ ତଥା ଜଳବାୟୁ କାରଣରୁ ଏ ଅଞ୍ଚଳର ଅଧିକାଂଶ ଅଧିବାସୀମାନଙ୍କର ରଙ୍ଗ ଚକଚକ ଗୋରା । ଅଉ କେତେକଙ୍କ ମତ ଯେ ନୃତାତ୍ତ୍ୱିକ କାରଣରୁ ଏମାନଙ୍କ ରଙ୍ଗ ଗୋରା । ତେବେ କାରଣ ଯାହା ହେଉନା କାହିଁକି ଏମାନଙ୍କ ରଙ୍ଗ ଗୋରା ହୋଇଥିବାରୁ ବୋଧେ ଇଂରେଜ ମାନେ ସେମାନଙ୍କୁ ଅତି ବେଶୀ ଭଲ ପାଇ ବସିଲେ । ତେଣୁ ଖ୍ରୀଷ୍ଟ ନ ଧର୍ମ ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ମଧ୍ୟ ଏ ଅଞ୍ଚଳରେ ଅତି ଦ୍ରୁତ ଗତିରେ ପ୍ରଚାର ଲାଭ କଲା । ଏ ଅଞ୍ଚଳର ଶିକ୍ଷା ଓ ସଭ୍ୟତାରେ ଇଂରେଜ ମାନଙ୍କ ଭୂମିକା ଗୁରୁତ୍ୱ-ପୂର୍ଣ୍ଣ । ଏକ ପ୍ରବନ୍ଧରେ ଉଲ୍ଲେଖ ଥିବାର ଦେଖିଲି ଯେ ଏବେ କେବଳ କାଥଲିକ ଚର୍ଚ୍ଚମାନଙ୍କ ଦ୍ୱାରା ଏ ଅଞ୍ଚଳରେ ମୋଟ ୩ଟି କଲେଜ । ୩୨ଟି ହାଇସ୍କୁଲ ଏବଂ ହଜାର ହଜାର ମଧ୍ୟ-ଇଂରାଜୀ ଏବଂ ନିମ୍ନମାଧ୍ୟମିକ ସ୍କୁଲ ଚାଲୁଛି । ଏମାନେ ସରକାରଙ୍କ ନିୟମାନୁସାରେ ଶିକ୍ଷାପ୍ରଦାନ କରୁଥିଲେ ମଧ୍ୟ ସରକାରଙ୍କ ସାହାଯ୍ୟ ଉପରେ ନିର୍ଭର କରନ୍ତି ନାହିଁ । ଚର୍ଚ୍ଚମାନେ ଯେ କେବଳ ସାଧାରଣ ଶିକ୍ଷା ପାଇଁ ସ୍କୁଲ କଲେଜ ଖୋଲିଚନ୍ତି ତା ନୁହେଁ ସେମାନେ ବେଶ୍ କିଛି ବୈଷୟିକ ଶିକ୍ଷାନୁଷ୍ଠାନ ମଧ୍ୟ ଖୋଲିଚନ୍ତି । ସେମାନଙ୍କ ଭିତରୁ ଟିଚର୍ସ ଟ୍ରେନିଂ, ଟେକନିକାଲ ଟ୍ରେନିଂ, ନର୍ସିଂ ଟ୍ରେନିଂ ଇତ୍ୟାଦି ପ୍ରଧାନ । ଏଥିରୁ ଅନୁମାନ କରାଯାଇ ପାରେ ଯେ ଚର୍ଚ୍ଚମାନେ ପ୍ରତ୍ୟକ୍ଷରେ ଏବଂ ପରୋକ୍ଷରେ ଉତ୍ତର ପୂର୍ବାଞ୍ଚଳର ସାମାଜିକ ଜନଜୀବନକୁ ନିୟନ୍ତ୍ରିତ କରୁଚନ୍ତି, ସେମାନେ ରାଜନୀତିକୁ ମଧ୍ୟ ପ୍ରଭାବିତ କରିବା ସ୍ୱାଭାବିକ ।

ଆମେ ଶିଲଂରେ କାଥଲିକ ଚର୍ଚ୍ଚ ଦେଖିଲୁ । ସମଗ୍ର ଉତ୍ତର ପୂର୍ବାଞ୍ଚଳରେ ଏହା ଗୋଟିଏ ଦର୍ଶନୀୟ ସ୍ଥାନ ବୋଲି କୁହାଯାଉଛି । ଏଠି ମଧ୍ୟ ଟୁରିଷ୍ଟଙ୍କର ପ୍ରବଳ ଭିଡ଼ ।

ମେଘାଳୟ ଭାରତର ମାନଚିତ୍ରରେ କ୍ଷୁଦ୍ରତମ ପ୍ରଦେଶ ମାନଙ୍କ ଭିତରୁ ଗୋଟିଏ । ମାତ୍ର ପାଞ୍ଚଟି ଜିଲ୍ଲାର ସମ୍ମିଶ୍ରଣରେ ଗଠିତ ଏ ପ୍ରଦେଶ ବୋଧେ ନବୀନତମ । ୧୯୭୨ ଜାନୁଆରୀ ୨୧ ରେ ଗଠିତ । ଏ ପ୍ରଦେଶର ଲୋକ ସଂଖ୍ୟା ମାତ୍ର ୧୩ ଲକ୍ଷରୁ କିଛି ଅଧିକ ଥିଲାବେଳେ ତାର ମୁଣ୍ଡପିଛା ଆୟ ୧୬୯୧ ଟଙ୍କା (୧୯୮୨-୮୩ ହିସାବ ଅନୁସାରେ) ଅର୍ଥାତ୍ ଓଡ଼ିଶାଠାରୁ ସାମାନ୍ୟ କମ୍ । ଓଡ଼ିଶାର

ମୁଣ୍ଡପିଛୁ ଆୟ ୧୫୩୪ ଟଙ୍କା । ଓଡ଼ିଶାର ଲୋକ ସଂଖ୍ୟା ୨ କୋଟି ୬୩ ଲକ୍ଷ୍ୟରୁ ବେଶୀ । ସାକ୍ଷରତା ଦୃଷ୍ଟିରୁ ମଧ୍ୟ ମେଘାଳୟ ଓଡ଼ିଶାର ପାଖାପାଖି । ଓଡ଼ିଶାର ସାକ୍ଷରତା ୩୪ . ୧୨ ଥିଲାବେଳେ ମେଘାଳୟର ସାକ୍ଷରତା ୩୪ . ୦୮ ।

ସାକ୍ଷରତା ଦୃଷ୍ଟିରୁ ଓଡ଼ିଶା ମେଘାଳୟର ପାଖାପାଖି ଥିଲାବେଳେ ମିଜୋରାମ, ତ୍ରିପୁରା, ମଣିପୁର, ଏପରିକି ନାଗାଲାଣ୍ଡର ଅନେକ ପଛରେ । ମନୋରମା ଇଅର ବୁକ ୧୯୯୧ର ତଥ୍ୟରୁ ଜଣାପଡ଼େ ଓଡ଼ିଶାର ସାକ୍ଷରତା ୩୪. ୧୨ ଥିଲା ବେଳେ ମିଜୋରାମର ଶତକଡ଼ା ୬୦, ତ୍ରିପୁରାର ଶତକଡ଼ା ୪୧ . ୫୮, ନାଗାଲାଣ୍ଡର ୪୧ . ୯୯ ଏବଂ ମଣିପୁରର ଶତକଡ଼ା ୪୧ . ୩୫ ।

ଏ ସବୁ ସତ୍ତ୍ୱେ ଆମେ ଗର୍ବ କରୁ ଆମର ଜଗତର ନାଥ ଜଗନ୍ନାଥ, ଆମର କୋଣାର୍କ, ଆମର ଖଣ୍ଡଗିରି, ଧଉଳି ଗିରି, ଆମର ବଡ଼ଦାଣ୍ଡ, ବଡ଼ ଦେଉଳ. ଆମେ ଗର୍ବ କରୁ ଆମର ବଡ଼ଦେଉଳ ପାଖରେ ଶଙ୍କର ଦେବଙ୍କ ଠାରୁ ଶଙ୍କରାଚାର୍ଯ୍ୟ ଯାଏ ଏବଂ ଜୟ ଦେବଙ୍କ ଠାରୁ ଚୈତନ୍ୟ ଦେବ ଯାଏ ସମସ୍ତେଁ ମୁଣ୍ଡ ନୁଆଁନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ପଞ୍ଚାବନ ବର୍ଷ ବୟସର ସ୍ୱତନ୍ତ୍ର ଓଡ଼ିଶା ମାତ୍ର ୨୦/୨୫ ବର୍ଷ ବୟସର କ୍ଷୁଦ୍ରତମ ପ୍ରଦେଶମାନଙ୍କ ସହିତ ସମକକ୍ଷ ହୋଇପାରୁନି ।

ମେଘାଳୟର ସରକାରୀ ସ୍ୱୀକୃତ ଭାଷା ଗାରୋ, ଖାସୀ ଏବଂ ଇଂରେଜୀ । ଗାରୋ ଏବଂ ଖାସୀ କେବଳ ସ୍ୱତନ୍ତ୍ର ଭାଷା ନୁହେଁ ସେମାନଙ୍କର ସ୍ୱତନ୍ତ୍ର ସାହିତ୍ୟ ଓ ସଂସ୍କୃତି ମଧ୍ୟ ରହିଛି ।

ମେଘାଳୟର ଚେରାପୁଞ୍ଜି ପୃଥିବୀର ସବୁଠାରୁ ବେଶୀ ବୃଷ୍ଟିପାତ ପାଇଁ ଏକ ଭୌଗୋଳିକ ଖ୍ୟାତି ରହିଛି । ବାର୍ଷିକ ହାରାହାରି ୧୨୭୦୦ ମିଲି ମିଟର ବୃଷ୍ଟିପାତ ସେଠି ହୁଏ । ଏ ସବୁ ସତ୍ତ୍ୱେ ଚେରାପୁଞ୍ଜି ଏକ ବିଖ୍ୟାତ ଦର୍ଶନୀୟ ସ୍ଥାନ । ଯୋଉମାନେ ଶିଲଂ ଦେଖିବାକୁ ଯାଆନ୍ତି ସେମାନେ ଚେରାପୁଞ୍ଜିରେ ଗୋଟାଏ ଦିନ ନ କଟେଇ ଆସନ୍ତିନି । ସେଠାର ଜଳପ୍ରପାତ, ସେଠାର ଚୂନପଥରର ଗୁମ୍ଫା, ସେଠାର ରାମକୃଷ୍ଣ ମିଶନର ଆଶ୍ରମ ଗୁଡ଼ିକ ପ୍ରକୃତରେ ଦେଖିବାର କଥା । ସେଠାକାର ନୋକାଲିକାଏ ଜଳପ୍ରପାତ ପୃଥିବୀର ସବୁଠାରୁ ଲମ୍ବା ପ୍ରପାତ ବୋଲି କୁହାଯାଏ ।

ବର୍ଷା ସମସ୍ତେ ଦେଖିଥିବେ । ଘଡଘଡ଼ି ଚଡ଼ଚଡ଼ି ସହ ବୁଲୁକା ମେଘର କଚଡ଼ା ବର୍ଷା, ଝିପି ଝିପି ବର୍ଷା ଏସବୁ ସମସ୍ତେ ଦେଖିଥିବେ । କିନ୍ତୁ ଚେରାପୁଞ୍ଜିର ବର୍ଷା ଆମର ଚିରଦିନ ମନେ ରହିବ । ପାହାଡ଼ିଆ ରାସ୍ତା ଭିତରେ ଚକ୍କର କାଟି ଆମ ଗାଡ଼ି ଉପରକୁ ଉପରକୁ ଉଠୁଥିଲା ବେଳେ ମେଘ ଏମିତି ଧସେଇ ପଶି ଆସିଲା

ଯେ ଆମ ରାସ୍ତା ପୂରାପୂରି ବନ୍ଦ ହୋଇଗଲା । ଦଶଫୁଟ ଆଗକୁ ମଧ୍ୟ ଦେଖିବା ସମ୍ଭବ ହେଲାନି । ଗାଡ଼ିର ଉଇଣ୍ଡ ସ୍କ୍ରିନ ଉପରେ ବନ୍ୟାର ସ୍ରୋତ ଛୁଟିଲା । ତାକୁ ଠେଲି ବାହାର ଓ୍ୱାଇପର ଉପରକୁ ଉଠି ନ ପାରି ପରାଜୟ ସ୍ୱୀକାର କଲା ।

ଡ୍ରାଇଭର ଷ୍ଟିଅରିଂ ଛାଡ଼ିଦେଲା । ଆମେ ବି ନିରୁପାୟ । ମେଘ ଘରେ ବନ୍ଦୀ ହେବାର ମଧୁର ଇମେଜ ମୋ ମନରୁ ଏଯାଏ ଯାଇନି କି ଯିବନି ।

ବର୍ଷାରେ ତିନ୍ତିବାରେ ଯେ କି ଆନନ୍ଦ ସେ କଥା ଯେ ତିନ୍ତେ ସେ ଜାଣେ । ପିଲାଙ୍କୁ ସେ ଅଦମ୍ୟ ମୋହ ମେଘ ବର୍ଷା ଦେଖିଲେ ଧିଁ ପାଗଳ କରେ । ସେ ଦିନ ବି ସେମିତି ମୋର ଝୁନ୍ ଇଚ୍ଛା ହେଉଥିଲା, କାର୍ ଭିତରୁ ବାହାରି ଟିକିଏ ଛୁଡ଼ାହେଇ ଯିବାକୁ । ମନେ ହେଉଥିଲା ବର୍ଷା ତା ବୁକୁରେ ମୋତେ ଜାବୁଡ଼ି ଧରନ୍ତା ଆଉ ମୁଁ ବି ତାର ଅନେକ ଦିନର ପିଲା ଦିନର ସାଙ୍ଗର ଅନ୍ତରଙ୍ଗ ଆଲିଙ୍ଗନ ଭିତରେ ଆଖି ବୁଜି କେଇଟା ମିନିଟ କଟେଇ ଦିଅନ୍ତି ।

କିନ୍ତୁ ସେ କଥା ହୋଇ ପାରିଲାନି । ମୋର ବନ୍ଧୁ ମୋତେ ମନା କଲା । କହିଲା କୁଆଡ଼େ ଯିବୁ ?'' ହସପିଟାଲ ?

ମୁଁ ଚୁପ୍ ହୋଇଗଲି ।

—o—

# ତ୍ରିପୁରାରେ କେଇ ଦିନ

ଆସାମରେ ରହଣି କାଳ ମଧ୍ୟରେ ଥରେ ତ୍ରିପୁରା ଯିବାକୁ ମୁଁ ଅନେକଦିନରୁ ଖୋଜୁଥିଲି । ଭାରତର ମାନଚିତ୍ରକୁ ଦେଖିଲେ ଅନେକ ଦୂରରେ ଦକ୍ଷିଣପୂର୍ବ କୋଣକୁ ମନୁଷ୍ୟଫେଣା ପରି ଝୁଲିପଡ଼ିଥାଏ କ୍ଷୁଦ୍ର ଦେଶଟିଏ । କେହି ସେଠିକୁ ସହଜରେ ଯାଇପାରନ୍ତିନି । ଅମୁହାଁ ଦେଉଳ ପରି । କଲିକତାରୁ ଅଗରତାଲା, ବାଂଲା ଦେଶ ଭିତର ଦେଇ ପଶିଗଲେ ବୋଧେ ପାଞ୍ଚଶହ କିଲୋମିଟରରୁ ବେଶୀଦୂର ହେବ ନାହିଁ । ଟ୍ରେନରେ ଗଲେ ଖୁବ୍ ବେଶୀରେ ଦଶବାରଘଣ୍ଟା ଲାଗନ୍ତା ।

ଇଉରୋପ ମହାଦେଶରେ ଗୋଟିଏ ପରେ ଗୋଟିଏ ଦେଶ ରେଳ ବା ମୋଟରରେ ଅତିକ୍ରମ କରୁଥିଲାବେଳେ ମୋଟେ କୌଣସି ବାଧାବିଘ୍ନ ନଥିଲା ବେଳେ ଆମର ଏଠି ବାଂଲା ଦେଶ ଭିତରକୁ ଯିବା ଅପରାଧ । ସୀମା ପାଖକୁ ମଧ୍ୟ ଗଲେ ପୋଲିସ ଅନେକ କଥା ପଚାରିବ ।

ମନଟା ମୋର ଅନେକ ଦିନରୁ କାଉଳି ହେଉଥାଏ । ବଙ୍ଗାଇଗାଓଁରୁ ରେଳରେ ଗୌହାଟୀ ଯାଇ ସେଠୁ ପୁଣି ଟ୍ରେନ ବଦଳେଇ ଧନୁପରି ବୁଲି ବୁଲି ଯାଇ ଆସାମର କାଚ୍ଛାର ଜିଲ୍ଲାର ବଦରପୁରରେ ପହଞ୍ଚିବାକୁ ହୁଏ । ସେଠୁ ବସରେ ଗଲେ ଅଗର ତାଲରେ ପହଞ୍ଚି ହେବ । କିନ୍ତୁ ସମସ୍ତଙ୍କୁ ଲାଗେ ପ୍ରାୟ ଦୁଇଦିନ । ସେଥିରେ ପୁଣି ଯଦି ମଝିରାସ୍ତାରେ ପାହାଡ଼ରୁ ମାଟି ଧସେ ତେବେ ନା ଆଗକୁ ଯାଇ ହେବ ନା ପଛକୁ । ବିପରୀତ ଦିଗରୁ ମାଟିକଟା ଯନ୍ତ୍ର ଆସି ରାସ୍ତା ସଫା ନ କରିବାଯାଏ ସେଇଠି ଅଟକିବାକୁ ହେବ ।

ଏକମାତ୍ର ସୁବିଧାଜନକ ରାସ୍ତା ଉଡ଼ାଜାହାଜରେ ଯିବା ।

ମୋତେ ସେଥର ଖବର ଆସିଲା ତ୍ରିପୁରାରେ ଥିବା ଆମ CISF ଅଫିସକୁ ଯାଇ ଗୋଟାଏ ତଦନ୍ତ କରିବାକୁ ହେବ । ମନ୍ଦ ଖୋଜୁଥିଲା ଯାହା ବଇଦ ବତେଇଲା ତାହା । ସୁବିଧା ହୋଇଗଲା ।

ସ୍ୱପ୍ନାକୁ ଟେଲିଫୋନ କଲି । ସ୍ୱପ୍ନା ମୁଖାର୍ଜି । ବଙ୍ଗାଇଗାଓଁ ତୈଳ ଶୋଧନାଗାରରେ ଗୌହାଟୀ ଅଫିସରେ ଜଣେ ଜୁନିଅର ଅଫିସର । ଲମ୍ବା ପତଳା ଗୋରା । ସବୁବେଳେ ହସ ହସ । ଯେତେବେଳେ ଦେଖିବ ତା ଓଠରେ ଟମୁଟାଏ ହସ ଓହଳିଥିବ । ମୋତେ ଦାଦା ବୋଲି ଡାକେ । ତା ସାଇ ମୋର

କଂପ୍ନୀ । ସେ BRPL (ବଙ୍ଗାଇଗାଓଁ ରିଫାଇନାରୀ ଓ ପେଟ୍ରୋକେମିକେଲ୍‌ସ ଲିମିଟେଡ଼) ଅଫିସରେ ଥାଏ ଟ୍ରାଭେଲ ଡକୁମେଣ୍ଟ ଗୃହରେ ।

ପଚାରିଲି ତୁମ ବଡ଼ବାବୁ କାହାନ୍ତି କି ? ବଡ଼ବାବୁ ମାନେ ନିତ୍ୟ ଗାଇକଆ । ଭଦ୍ର ପରିବାର ଲୋକ । ଯୋଉ କାମ ମୋଟେ ହେଉ ନଥିବ ତ କି ନିତ୍ୟବାବୁ ପାଞ୍ଚମିନିଟରେ କରିଦିଅନ୍ତି । ତେଣୁ ତାଙ୍କର ନାଁ ଅଛି । ସେ ଅଫିସରେ ସର୍ବେସର୍ବା ।

ମୁଁ କହିଲି ତ୍ରିପୁରା ଯିବି । କେବେ ଏବଂ କୋଉ ଫ୍ଲାଇଟରେ ଗଲେ ସୁବିଧା ହେବ ।

ସେ କହିଲେ ଅଗରତାଲାକୁ ସପ୍ତାହରେ ଚାରିଦିନ ଫ୍ଲାଇଟ ଥିଲେ ମଧ୍ୟ ଯେତେବେଳେ ଇଚ୍ଛା ଟିକଟ ମିଳିଯିବ । ମୁଁ କହିଲି ତେବେ ମୋ ପାଇଁ ଗୋଟିଏ ବୁକ୍ କରିଦିଅ ଏବଂ ଚାରିଦିନ ପରେ ରିଟର୍ଣ୍ଣ ଟିକଟ ମଧ୍ୟ କରିଦିଅ । ମୁଁ ରିକ୍ୱିଜିସନ ପଠେଇ ଦେଉଛି ।

ନିର୍ଦ୍ଧାରିତ ଦିନରେ ମୁଁ ଗୌହାଟି ବିମାନ ବନ୍ଦରରେ ପହଞ୍ଚିଲି । କାଉଣ୍ଟରରେ ଅନୁରୋଧ କଲି ମୋତେ ଝରକାପାଖ ସିଟ୍‌ଟିଏ ଦିଅନ୍ତୁ । ତା'ବି ମିଳିଲା ।

ଆଜିକାଲି ସବୁ ବିମାନ ବନ୍ଦରରେ ସିକ୍ୟୁରିଟି ଚେକ ଅନେକ ବଢ଼ିଛି । କିନ୍ତୁ ଉତ୍ତରପୂର୍ବାଞ୍ଚଳ ରାଜ୍ୟମାନଙ୍କର ବିମାନ ବନ୍ଦରରେ ସେ ଚେକ ଆହୁରି ବେଶୀ । ତଥାପି ସେ ସବୁକୁ ଅତିକ୍ରମ କରି ମୁଁ ଯାଇ ବିମାନରେ ବସିଲି ।

ଆସିଲା କଫି ଓ ଟଫି । ପରିଚାରିକାମାନେ ନେଇ ଆସିଲେ ହେଁରେ ! ଏ ଅଞ୍ଚଳର ବିମାନମାନଙ୍କରେ ସାଧାରଣତଃ ଏଇ ଉତ୍ତର ପୂର୍ବାଞ୍ଚଳୀୟ ରାଜ୍ୟମାନଙ୍କର ଝିଅମାନେ ହିଁ ପରିଚାରିକା ଥାଆନ୍ତି । ସେମାନେ ସାଧାରଣତଃ ଆସାମ, ମଣିପୁର, ତ୍ରିପୁରା ଏବଂ ମିଜୋରାମରୁ ଆସି ଥାଆନ୍ତି । ବେଶ୍ କିଛି ଅଂଶ ବଙ୍ଗଳାରୁ ମଧ୍ୟ ଥାଆନ୍ତି ।

ଓଡ଼ିଶାରୁ ଏଯାଏ କେହି ବିମାନ ପରିଚାରିକା ଅଛନ୍ତି କି ନା ମୁଁ ଜାଣେନା । ସେମାନେ ବୋଧେ ଏଯାଏ ଚାକିରିଟାକୁ ସେମିତି ସମ୍ମାନ ଦେଇପାରି ନାହାନ୍ତି । ତେବେ ଏ ଚାକିରିଟା ନିଶ୍ଚିତ ଚାକିରିପରି ଖାଲି ସମ୍ମାନ ଜନକ ଏବଂ ସେବାମୂଳକ ତ ନୁହେଁ । ଏକ ଦୁଃସାହସିକ କାର୍ଯ୍ୟ ମଧ୍ୟ ।

କଫି ପିଇସାରି ପାଟିରେ ଚକୋଲେଟଟିଏ ଗୁରେଇଲି ବେଳକୁ ଅଗରତାଲା ବିମାନ ବନ୍ଦର ଆସିଗଲା । ମୋଟେ ୩୫ ମିନିଟ ଲାଗେ । ଏତେ କମ୍ ସମୟ ବିମାନରେ ଆସିଲି ବୋଲି ଜଣା ପଡ଼ୁନି । ମନଟା ମୋର ଫିକା

ପଡ଼ିଗଲା । ଏଇ ୩୦ ମିନିଟପାଇ ମୋର ମନେ ହେଲା ବିମାନଟି ଅନେକଗୁଡ଼ିଏ ନଦୀ ଉପନଦୀ ଉପର ଦେଇ ଉଡ଼ିଆସିଲା । ଖାଲି ନଦୀ । ନଦୀମୟ ।

ଅଗରତାଲା ବିମାନ ବନ୍ଦରରେ ଓହ୍ଲେଇଲା ବେଳକୁ ସମୟ ୧୨.୩୦ । ମୁଁ ବ୍ରିଫ କେଶଟି ଧରି ସିକ୍ୟୁରିଟି ଚେକ୍‌ଗେଟ୍ ପାରହେଲା ବେଳକୁ ଜଣେ ସବ୍‌ଇନସ୍‌ପେକ୍ଟର ମୋତେ ଅଭିବାଦନ ଜଣେଇଲେ । ସେ ଆସିଥିଲେ ମୋତେ ରିସିଭ କରିବାକୁ ।

ବିମାନ ବନ୍ଦରରୁ ONGC ଅଫିସଟା ପ୍ରାୟ ୨୦।୨୫ କିଲୋମିଟର ହେବ । ଅଗରତାଲା ସହରର ଗୋଟିଏ ପଟେ ବିମାନ ବନ୍ଦର ଓ ତାର ବିପରୀତ ପଟେ ONGC ଅଫିସ । ସେଇଠି ଆମ CISF ଅଫିସ । ONGCର ଗେଷ୍ଟ ହାଉସ୍‌ଟି ବେଶ୍ ସୁନ୍ଦର । ଦୁଇମହଲା କୋଠା । ଖାଇପିଇ ପ୍ରଥମେ ଟିକିଏ ବିଶ୍ରାମ ନେଇଗଲି ।

ସେଦିନ ଥାଏ ଲକ୍ଷ୍ମୀପୂଜା, ପ୍ରତିଘରେ ଲକ୍ଷ୍ମୀପୂଜା ବେଶ୍ ଜାକଜମକରେ ହୁଏ । ସେ ଧନୀ ହୋଇଥାଉ ବା ଗରିବ ହୋଇଥାଉ । ହଜାର ହଜାର ସଂଖ୍ୟାରେ ସେତେବେଳେ ମାଟିର ଲକ୍ଷ୍ମୀମୂର୍ତ୍ତି ରାସ୍ତାକଡ଼ରେ ବିକ୍ରି ହୁଏ ।

ସେ ଦୃଷ୍ଟିରୁ ତ୍ରିପୁରାର ମୃତ୍ତିକା ଶିଳ୍ପଟା ବେଶ୍ ଭଲଥିବ ବୋଲି ମନେ ହେଲା । ଅନ୍ୟାନ୍ୟ ପ୍ରଦେଶରେ ମୃତ୍ତିକା ଶିଳ୍ପ ମରି ମରି ଆସୁଚି । ଆସାମରେ ମୃତ୍ତିକା ଶିଳ୍ପ କେବଳ ଫୁଲକୁଣ୍ଡ ତିଆରିରେ ସୀମାବଦ୍ଧ । ହାଁ ଅବଶ୍ୟ ମୂର୍ତ୍ତି ତିଆରି ହୁଏ—ପୂଜା ପାର୍ବଣରେ । ଓଡ଼ିଶା, ବଂଗଳା ଓ ବିହାରରେ ସେଇ ଅବସ୍ଥା । ଗାଁର କୁମ୍ଭାରମାନେ ଏବେ ଚକ ବୁଲେଇବା କାମ ଛାଡ଼ି ଦେଲେଣି । ଯାହା ଟିକିଏ ଥିଲା ଆଲୁମିନିଅମ୍ ଶିଳ୍ପର ଆବିର୍ଭାବ ପରଠୁ ଗାଁର ମୃତ୍ତିକା ଶିଳ୍ପ ମରିବାକୁ ବସିଲାଣି । ଖାଲି ମୃତ୍ତିକା ଶିଳ୍ପ ସରକାରଙ୍କ ପଞ୍ଚାୟତ ଶିଳ୍ପ ଭିତରେ ମଧ୍ୟ ଉତ୍ସାହ ପାଇପାରୁନି ।

କିନ୍ତୁ ତ୍ରିପୁରାରେ କଥାଟା ଅଲଗା ପରି ଲାଗେ । ଏତେ ବେଶି ସଂଖ୍ୟାରେ ମୂର୍ତ୍ତି ସେଠି ତିଆରି ହୁଏ ଯେ ବର୍ଷସାରା କାରିଗରର ହାତ ବନ୍ଦ ହୁଏନି । ମୂର୍ତ୍ତିର ଚମତ୍କାରିତା ମନ ଟାଣିନିଏ । ହାତର ବାହାଦୁରୀ ମାନିବାକୁ ହେବ । ରାସ୍ତାରେ ଯାଉଥିବା ବେଳେ ଦୁଇ କଡ଼ରେ ଧାଡ଼ି ଧାଡ଼ି ରଙ୍ଗ ବେରଙ୍ଗର କଣ୍ଢେଇମାନ ଦେଖିଲେ ଫୁଲ ବଗିଚା ଭିତରେ ବୁଲୁଥିଲାପରି ଲାଗେ । ଆଖି ଲାଖିଯାଏ ।

ଭାରି ଇଚ୍ଛା ହେଉଥିଲା ଗୋଟାଏ ଯୋଡ଼ାଏ ସେଥିରୁ ନେଇ ଆସିବାକୁ, କିନ୍ତୁ କେମିତି ଆଣିବି ? ବିମାନରେ ପୁଣି ବିପଦ ଆରମ୍ଭ ହେବାର ସମ୍ଭାବନାକୁ

ଏଡ଼େଇ ଦିଆଯାଇ ନପାରେ । ବିଶେଷକରି ବିମାନ ବନ୍ଦରରେ ଆମର ଚତୁର ପୋଲିସ ଯଦି ପରୀକ୍ଷାକରିବାକୁ ଯାଇ ଚକାଇ ପାରିଛି ? ସେତେବେଳେ ଫୋପାଡ଼ି ଦେବାକୁ ଗ୍ରହିଲେ ମଧ୍ଯ ଫୋପାଡ଼ି ହେବନି । ପୋଲିସ ସେଥିରେ ମଧ୍ଯ ବାଧା ଦେବ ଫୋପାଡ଼ିବା ପୂର୍ବରୁ ସେ ହୁଏତ କହିବ —ମୁଁ ଆଗ ପରୀକ୍ଷା କରେ ତା ପେଟ ଭିତରେ ବାରୁଦ ଅଛି କି ନା । ନଚେତ୍ ଫୋପାଡ଼ି ଦେଲେ ଯଦି ବିସ୍ଫୋରଣ ଘଟେ ? ସେତେବେଳେ ମୋ ପାଟି ଖନି ମାରିଯିବ ।

ସେ ଦିନ ଅଗରତଲାର ସବୁ ଦୋକାନ ବଜାର ବନ୍ଦ ଥିଲା । କାଁ ଭାଁ ଜଳଖିଆ ଦୋକାନ । ଫଳ ପରିବା ଦୋକାନ ଓ କେତୋଟି ଔଷଧ ଦୋକାନ ବ୍ୟତୀତ ଆଉ ସବୁ ବନ୍ଦ । ରାସ୍ତାରେ ଲୋକ ଗହଳି ମଧ୍ଯ ମୋଟେ ନଥିଲା । ସମସ୍ତେ ଯେ ଯା ଘରେ ଲକ୍ଷ୍ମୀପୂଜାରେ ବ୍ୟସ୍ତ । ସାମାନ୍ୟ ଦେଖିଏ ବୁଲିବୁଲି ମାତ୍ର ଆମେ ଗେଷ୍ଟହାଉସକୁ ଫେରିଆସିଲୁଁ ।

ସେଦିନ ରାତିରେ ଗେଷ୍ଟହାଉସରେ ମୋର ଭେଟ ହେଲା, ସେଠାକାର ଡେପୁଟି କମାଣ୍ଡାଣ୍ଟ ଯୋଶୀଙ୍କ ସହିତ । ଅମାୟିକ ଭଦ୍ରଲୋକ । ପ୍ରୋଗ୍ରାମଟା ସେଇଠି ଠିକ୍ କରିନେଲି । ସେ କହିଲେ ମୁଁ ତ ଆଗରୁ ସବୁ ଠିକ୍ କରିସାରିଛି । ଅଫିସ କାମ ପରେ ବୁଲାବୁଲି କାମଟା କାଲିଠୁ ଆରମ୍ଭ ହେବ । ତ୍ରିପୁରାର ଜଣେ ଲୋକ ମୋର ଗାଇଡ଼ ହୋଇ ମୋ ସାଥିରେ ଯିବେ ।

## ନୀର ମହଲ

ପରଦିନ ସକାଳେ ଜଳଖିଆ ପରେ ଆମେ ବାହାରି ପଡ଼ିଲୁଁ ନୀର ମହଲ ଦେଖିବାକୁ । ଅଗରତଲା ଠାରୁ ପ୍ରାୟ ପଚାଶ କିଲୋମିଟର ଦୂର ।

ଅଙ୍କାବଙ୍କା ପାହାଡ଼ିଆ ରାସ୍ତା ପାରହୋଇ ଆମ ଗାଡ଼ି ସୋନାମୁରା ସହରରେ ପହଞ୍ଚିଲା ବେଳକୁ ଦିନ ୧୦ଟା । ଓହ୍ଲେଇ ପଡ଼ିଲୁଁ ଆମେ ଗ୍ରୁପିଇବାକୁ । ସୋନାମୁରା ଗୋଟେ ସହରଟିଏ । ଦଶମିନିଟ ଆମେ ସେଠି ଅଟକି ପୁଣି ଚାଲିଲୁ ରୁଦ୍ର ସାଗର ଆଡ଼େ । ସୋନାମୁରା ସହରଠାରୁ ରୁଦ୍ର ସାଗର ପ୍ରାୟ ୭।୮ କିଲୋମିଟର ଦୂର । ଗାଧ ଜଙ୍ଗଲ ଓ ଗୁଆ ବଣ ଭିତରଦେଇ ସରୁ ପିଚୁ ରାସ୍ତା ସାପପରି ବଙ୍କେଇ ବଙ୍କେଇ ଯାଇଛି ।

ରୁଦ୍ର ସାଗର ନୁହେ । ଗୋଟିଏ ଗ୍ରେଟ ହ୍ରଦ । ପାଣି ସ୍ଥିର କାଚ ପରିଷ୍କାର । କାଚ କେନ୍ଦୂପରି । ହ୍ରଦ କୂଳରେ ଗୋଟାଏ ବିରାଟ ଦୁଇ ମହଲା କୋଠା । ଗୋଟିଏ ଟୁରିଷ୍ଟ ବାଂଲୋ । ବାଂଲୋର ଛବି ହ୍ରଦ ପାଣିରେ ପଡ଼ି ନୂଆ ଦୃଶ୍ୟଟିଏ ସୃଷ୍ଟି କରୁଛି ।

ଆମେ ଭିତରକୁ ପଶିଗଲୁ । ଘରର ସାଜସଜ୍ଜା ଅପୂର୍ବ । ସବୁ ବାଉଁଶର ଚାରୁକାର୍ଯ୍ୟ । ଏ ପ୍ରକାର ବାଉଁଶର ଶିଳ୍ପ କଳା ଭାରତ ବିଖ୍ୟାତ । ବାଉଁଶରେ ଏତେ ସୂକ୍ଷ୍ମ କାରୁକାର୍ଯ୍ୟ ହୋଇପାରେ ଏକଥା ନ ଦେଖିଲେ ବିଶ୍ୱାସ କରି ହେବନା । ବଜାର ଭିତରେ ମୁଁ ଏମିତ ଗୋଟିଏ ସୋ' ରୁମ୍‌କୁ ଉଠି ଯାଇଥିଲି । ଉଠି ଯାଇଥିଲି କହିଲେ ଭୁଲ ହେବ । ମୋତେ ସେ ସୋ ରୁମ୍‌ର ସୌନ୍ଦର୍ଯ୍ୟ ଚୁମ୍ବକ ପରି ଭିତରକୁ ଟାଣି ନେଲା । ଯାହା ଦେଖିଲି ଆଖିରେ ତାହା ମଧ୍ୟ ବିଶ୍ୱାସକରି ହେଉନ । ବାଉଁଶ ପାତିଆର ସୂକ୍ଷ୍ମ କାଠିରେ ଗାନ୍ଧି, ବୁଦ୍ଧ, ସୁଭାଷ, ନେହେରୁ, ବିବେକାନନ୍ଦ, ରାମକୃଷ୍ଣ ପରମହଂସ ଲେନିନ ଏବଂ ରବୀନ୍ଦ୍ର ନାଥଙ୍କର ଫଟ ସବୁ ଏମିତ ତିଆରି ହୋଇଚି ଯେ ମୁଁ ତାକୁ ଦେଖି ମଧ୍ୟ ବିଶ୍ୱାସ କରିପାରିଲିନି । ସେଥିରେ ଗୋଟିକରେ ହାତମାରି ଦେଖି ନିଶ୍ଚିତ ହେଲା ପରେ କାଉଣ୍ଟରରେ ଥିବା ଝିଅଟିକୁ ପଚାରିଲି ଏଇଟାର ଦାମ କେତେ ? ସେ କହିଲେ ୮୫ ଟଙ୍କା । ମନେ ମନେ ଭାବିଲି ସେମିତ କିଛି ଦାମ ବେଶୀ ନୁହେଁ । ମୁଁ ଓଡ଼ିଶାରୁ ଆସିଚି ଜାଣି ସେ ମୋତେ ଆହୁରି କେତେକ ହସ୍ତକର୍ମ ଦେଖେଇଲେ । ଅତି ସୂକ୍ଷ୍ମ ମାଳାଟିଏ ଦେଖେଇଲେ । ଆମ ସୁନା ଗହଣା ଦୋକାନମାନେ ଯେମିତ ପ୍ଲାଷ୍ଟିକ ଫରୁଆ ଭିତରେ ରଖିଥାଆନ୍ତି, ମାଳାଟା ସେମିତ ଗୋଟାଏ ଫରୁଆ ଭିତରେ ଥିଲା । ପଚାରିଲି—ଏଇଟାର ଦାମ କେତେ ? ସେ କହିଲେ ୬୫୦ ଟଙ୍କା । ଚମକି ପଡ଼ିଲି, କିନ୍ତୁ ଏଥିରେ ଚମକି ପଡ଼ିବାର କିଛି ନାହିଁ । କାରଣ ରୂପାର ତାରକସି କାମର ଦାମ୍ ସେ ତୁଳନାରେ ବେଶୀ ନୁହେଁ ।

ମୋ ସ୍ତ୍ରୀ ସେ ମାଳା ପିନ୍ଧନ୍ତୁ ବା ନ ପିନ୍ଧନ୍ତୁ, ମୋ ଝିଅମାନେ ତାକୁ ଦେଖି ବାଉଁଶ ପାତିଆର ମାଳା ବୋଲି କହି ନାକ ଟେକନ୍ତୁ ପଛକେ ମୁଁ ସେଦିନ ଅପେକ୍ଷାକୃତ ଟିକିଏ କମ୍ ଦାମର ମାଳାଟିଏ କିଣିବାର ଲୋଭ ସମ୍ବରଣ କରିପାରିଲିନି । ତା ସହିତ 'ଆଉ କେତୋଟି ଡେକୋରେସନ ପିସ ମଧ୍ୟ କିଣିଲି । ଦୁଃଖ ହେଲା ପକେଟଟା ସେଦିନ ମୋର ସେତେ ଗରମ ନଥିଲା ।

ମୁଁ ନୀରମହଲର ଟୁରିଷ୍ଟ ବାଂଲୋରେ ଡ୍ରଇଂ ରୁମ୍‌ର ବାଉଁଶର ସାଜସଜ୍ଜା କଥା କହୁଥିଲି । ବିଭିନ୍ନ ସାଇଜର ଗୋଟା ବାଉଁଶକୁ କାଟି କାନ୍ଥ ଦେହରେ ବିଭିନ୍ନ ଫୁଲ ଓ ମୋଗଲ ଆର୍ଟ କରାଯାଇଚି, ତାକୁ ଦେଖିଲେ ଆଖି ଖୋସି-ହୋଇ ଯାଏ ।

ଡ୍ରଇଂ ରୁମ ଭିତରୁ ହ୍ରଦର ଦୃଶ୍ୟ ଅପୂର୍ବ । ବେଶ କିଛି ସମୟ ଆମେ ସେ ବଙ୍ଗଳାର ଗୃହପରେ ବୁଲାବୁଲି କଲୁ ପରେ ମୋ ସାଥିରେ ଆସିଥିବା

ଲୋକଟା ଗୋଟାଏ ଦେଶୀ ଡଙ୍ଗା ଧରି ଆସି ପହଞ୍ଚିଲା । ଆମେ ଯିବୁ ନୀର ମହଲକୁ । ହ୍ରଦ ଭିତରେ ଗୋଟାଏ ବଡ଼ଛୋଟ ରାଜପ୍ରାସାଦ । ଡଙ୍ଗାରେ ସେଠାକୁ ଯିବାଛଡ଼ା ଅନ୍ୟ ଉପାୟ ନାହିଁ । ମଟର ଲଞ୍ଚର ବ୍ୟବସ୍ଥା ନାହିଁ । ତାଙ୍କର କେଆର ଟେକର କହିଲେ ହ୍ରଦର ଚାରିପାଖରେ ଥିବା ଆଦିବାସୀ ଓ ହରିଜନ ଶ୍ରେଣୀର ଲୋକମାନଙ୍କର ହ୍ରଦରୁ ମାଛ ମାରିବା ଏବଂ ପର୍ଯ୍ୟଟକମାନଙ୍କୁ ନିଜ ଡଙ୍ଗାରେ ନେବା ଆଣିବା କରିବା ପ୍ରଧାନ ଜୀବିକା । ମଟର ଲଞ୍ଚର ପ୍ରଚଳନ କରି ସେଥିରେ ସରକାର ହସ୍ତକ୍ଷେପ କରିବାକୁ ଚାହାନ୍ତି ନାହିଁ । ମୁଁ ଦେଖିଲି ଉଦ୍ଦେଶ୍ୟ ମନ୍ଦ ନୁହେଁ ।

ଆମେ ଡଙ୍ଗାରେ ବସିଲୁ । ଅକ୍‌ଟୋବର ମାସ । ବେଶୀ ଖରା ନଥାଏ । ନାଉରୀ ଡଙ୍ଗା ଛାଡ଼ିଦେଲା । କୂଳରୁ ନୀରମହଲ ପ୍ରାସାଦପାଏ ପ୍ରାୟ ଦୁଇ କିଲୋମିଟର ହ୍ରଦ । ଆମ ଡଙ୍ଗା ପରି କେତେ ଡଙ୍ଗା ଆସୁଛି ଏବଂ ଯାଉଛି ।

ସେ ଦୃଶ୍ୟ ଅପାରୋଶା ।

ମହାନଦୀରେ ଜ୍ୟୋତ୍ସ୍ନା ରାତିର ମୁଁ କରିବାର ସୌଭାଗ୍ୟ ଅର୍ଜନ କରିନି ସତ, ହେଲେ ଜ୍ୟୋତ୍ସ୍ନା ଧୌତ ନୀଳ ଜଳରାଶିର ଅପୂର୍ବ ଶୋଭା ସମ୍ଭାର ମୁଁ ଅନେକଥର ଅଞ୍ଜଳି ପାନ କରିଛି । କନ୍ୟାକୁମାରୀର ସାଗର ସଙ୍ଗମରେ ବିବେକାନନ୍ଦ ରକ୍ ମେମୋରିଏଲକୁ ଯାଇଛି । ମାଡ୍ରାଜର ମେରିନା ବିଚରେ ସନ୍ଧ୍ୟା ପରେ ବାଲୁକାର ଶଯ୍ୟା ଉପରେ ବସି ବସି ନୀଳ ଜଳର ବେଳା ଭିତରେ ଜ୍ୟୋତ୍ସ୍ନାର ଅସୁମାରି ଖେଳ କୌତୁକ ଦେଖିଛି । ଆସାମର ବିଶାଳ ବ୍ରହ୍ମପୁତ୍ରର ସ୍ରୋତ ଉପରେ ଅନେକଥର ଏକାକୀ ନିର୍ଜନ ଦ୍ୱୀପକୁ ଯାଇ ମହାନନ୍ଦରେ ଦେବଦର୍ଶନ କରିଛି । ଖାଲି ସେତିକି ନୁହେଁ ପ୍ରାକ୍ ଯୌବନରେ ଆମ ଗାଁର ସୁବର୍ଣ୍ଣରେଖାର ଶୀତଳ ବାଲିଶେଯ ଉପରେ ମୁହଁ ସନ୍ତର କଳା ଛାଇ ଭିତରେ ଚୁପ୍‌ଚାପ୍ ଶୋଇ ଶୋଇ ଜହ୍ନର ଜଳକେଳି ଭିତରେ ଅସୁମାରି ସ୍ୱପ୍ନର କୁଡ଼ିଆଣୀ ଜାଲ ବୁଣିଛି । କିନ୍ତୁ କେଜାଣି କାହିଁକି ରୁଦ୍ର ସାଗରର ନୀରମହଲ ଯାହା ମୋତେ ଯେପରି ଅତି ନିବିଡ଼ଭାବରେ ଆକର୍ଷଣ କଲା, ଅତି ନିଜର ପରି, ଅତି ଆପଣାର ପରି ।

ନୀର ମହଲର ଦୃଶ୍ୟ ମୋର ଏବେବି ମନେ ଅଛି । ତାର ଦୃଶ୍ୟ ଅନ୍ୟାନ୍ୟ ଅନେକ ପ୍ରାସାଦର ଦୃଶ୍ୟ ଠାରୁ ଅଲଗା । ନୀରମହଲ—ଯେପରି ବଡ଼ ଶାନ୍ତଶିଷ୍ଟ ସରଳ ନିଷ୍କପଟ ଗ୍ରାମ୍ୟ ବାଳିକାଟିଏ ପରି ଠିଆ ହୋଇଥାଏ ଆକାଶକୁ ଚାହିଁ । ଯେମିତି ଅନେକଦିନରୁ ସେ କଅଣ ଖୋଜୁଛି । କାହାକୁ ଅପେକ୍ଷା କରିଛି ଏବଂ କାହିଁକି ?

ତଙ୍ଗା କୂଳରେ ଲଗିଲା । ଆମେ ଖପାଖପ ଡେଇଁ ପଡ଼ିଲୁ । ପାଣି ଭିତରୁ ସିମେଣ୍ଟ ପାହାଚ ଉପରକୁ ଉଠିଯାଇଛି । ବିରାଟ ପ୍ରାସାଦ ଭିତରକୁ ସେଇଟା ଏକମାତ୍ର ରାସ୍ତା ।

ନୀରମହଲର ଇତିହାସ ଖୁବ୍ ବେଶୀ ପୁରୁଣା ନୁହେଁ । ସେଠି ଯୋଉ କେୟାର ଟେକର ଅଛନ୍ତି ସେ ଆମକୁ ବୁଝେଇ ଦେଲେ । ଏ ବିରାଟ ରାଜ-ପ୍ରାସାଦଟି ତିଆରି ହେଇଥିଲା ୧୯୩୦ରେ ଏବଂ ତିଆରି ହୋଇଥିଲା ତ୍ରିପୁରାର ତତ୍କାଳୀନ ରାଜା ମହାରାଜା ବୀର ବିକ୍ରମ କିଶୋର ମାଣିକ୍ୟ ବାହାଦୁରଙ୍କ ସମୟରେ ।

ସେ ସମୟର ମହାରାଜାମାନଙ୍କର ଖିଆଲକୁ ଏବର ମାର୍କସୀୟ ଚିନ୍ତାଧାରା ମାଧ୍ୟମରେ ଯେତେ ସମାଲୋଚନା କଲେ ମଧ୍ୟ ଏବେ ତାହା ଯେ ଦର୍ଶନୀୟ ବସ୍ତୁ ଏଥିରେ କେହି କେବେ ଦ୍ୱିମତ ହେବେ ନାହିଁ ।

ମହାରାଜା ଗୋଟିଏ ହ୍ରଦ ଭିତରେ ଏତେବଡ଼ ପ୍ରାସାଦଟିଏ ତୋଳେଇବା ଭିତରେ ମାତ୍ର ଦୁଇଟା କାରଣ ହିଁ ଆମ ଆଖିଆଗକୁ ଆସେ । ପ୍ରଥମଟି ହୁଏତ ତାଙ୍କର ଅପୂର୍ବ ସୁନ୍ଦରୀ ରାଣୀଙ୍କୁ ଜ୍ୟୋତ୍ସ୍ନା ବିଜଡ଼ିତ ରାତିର ନିଜନ୍ତିତ ପ୍ରହରରେ ଧରି ନୌକା ବିହାରର ପ୍ରବଳ ପ୍ରଲୋଭନକୁ ଏଡ଼ିପାରି ନଥିବେ । ଅନ୍ୟ ଏକ କାରଣ ହେଲା ହୁଏତ କେହି ଅଜଣା ଶତ୍ରୁକୁ ଭୟକରି ଏକ ନିରାପଦ ସ୍ଥାନକୁ ଆସିବାର ଇଚ୍ଛା ଥିଲା ।

ବେଶୀ ପୁରୁଣା ନ ହେଲେ ମଧ୍ୟ ଏ ବିଷୟରେ ଇତିହାସର ପୃଷ୍ଠାରେ ବେଶୀ କିଛି ମୁଁ ପାଇପାରିନି । କେବଳ ଏତିକି ଖବର ପାଇଲି ଯେ ୧୯୩୦ରେ ପ୍ରାସାଦ ତିଆରି ସରିବା ପରେ ମହାରାଜା ଥରେ ଦୁ'ଥର ମାତ୍ର ସେଠାକୁ ଯାଇଚନ୍ତି । ପରେ ସେ ପ୍ରାସାଦ ପ୍ରାୟ ପରିତ୍ୟକ୍ତ ହେଇ ପଡ଼ିଲା । ହୁଏତ ଏମିତି ବି ହୋଇ-ପାରି ଥାଏ ଯେ ଯେତେବେଳେ ଅଗରତାଲାରୁ ସେଠାକୁ ଯିବାକୁ ଗମନାଗମନ ପଥର ସୁବିଧା ନଥିବାରୁ ମହାରାଜା ଶେଷରେ ତାକୁ ପରିତ୍ୟାଗ କରିବାକୁ ବାଧ୍ୟ ହେଲେ । କେୟାର ଟେକର ମହୋଦୟ ଆମକୁ କହିଲେ ପ୍ରାସାଦଟିକୁ ସେ ସମୟରେ ଇଂରେଜ କଣ୍ଟ୍ରାକ୍ଟର ମାର୍ଟିନବର୍ଣ୍ଣ କମ୍ପାନୀ ତିଆରି କରିଥିଲେ ।

୨୨୦୦ ଏକର ପରିମିତ ହ୍ରଦର ମଧ୍ୟସ୍ଥଳରେ ନିର୍ମିତ ପ୍ରାସାଦ ନୀରମହଲର ନକ୍ସା ମଧ୍ୟ ସେଇ କମ୍ପାନୀ ପ୍ରସ୍ତୁତ କରିଥିଲେ ।

ଭାରତ ସ୍ୱାଧୀନ ହେଲା ପରେ ରାଜା ମାନଙ୍କର ରାଜତ୍ୱ ଲୋପ ହେଲା ୧୯୪୮ରେ । ସେଇ ସମୟରୁ ନୀରମହଲ ଏକପ୍ରକାର ସରକାରଙ୍କ ଅଧୀନକୁ

ଆସିଲା । ସେଇ ସମୟରୁ ପ୍ରାସାଦଟି ସରକାରଙ୍କ ଅଧୀନକୁ ଆସିଥିଲେ ମଧ୍ୟ ସରକାର ତାର ଯତ୍ନ ନେଉ ନ ଥିଲେ । ଫଳରେ ସ୍ଥାନୀୟ ଲୋକମାନେ ପ୍ରାସାଦରୁ ଆସ୍ତେ ଆସ୍ତେ ମୂଲ୍ୟବାନ ଜିନିଷମାନ ଖୋଲି ନେଇଗଲେ । ଶେଷରେ ଅବସ୍ଥା ଏପରି ହେଲା ଯେ ତାର ଝରକା କବାଟ ମଧ୍ୟ ଲୋକେ ନେଇଗଲେ । ଏବେ ସେଠି ଆଉ କିଛି ନାହିଁ କହିଲେ ଚଳେ । ଶେଷରେ ୧୯୮୫ରେ ସରକାର ପ୍ରାସାଦଟିକୁ ସମ୍ପୂର୍ଣ୍ଣରୂପେ ନିଜ ଅକ୍ତିଆରକୁ ନେଇ ତାର ରକ୍ଷଣାବେକ୍ଷଣ ଦାୟିତ୍ୱ ଗ୍ରହଣ କଲେ । ଭାଙ୍ଗିରୁଜି ଯାଇଥିବା ଅଂଶଗୁଡ଼ିକ ପୁଣିଥରେ ତିଆରି ଗଲାଣି । ନୀରମହଲ ଭିତରେ ସୁନ୍ଦର ସୁନ୍ଦର ଫୁଲ ବଗିଚାମାନ ଗଢ଼ିଉଠୁଛି । ତାକୁ ଟୁରିଷ୍ଟମାନଙ୍କ ପାଇଁ ଅଧିକ ଆକର୍ଷଣୀୟ କରିବାକୁ ସରକାର ଯୋଜନାମାନ ପ୍ରସ୍ତୁତ କରୁଛନ୍ତି ।

ସମଗ୍ର ଉତ୍ତର ପୂର୍ବାଞ୍ଚଳରେ ନୀରମହଲ ପର୍ଯ୍ୟଟକମାନଙ୍କ ପାଇଁ ଏକ ଅପୂର୍ବ ଆକର୍ଷଣ । ନୀର ମହଲରେ କାଚକେନ୍ଦ୍ର ପାଣିରେ ଜ୍ୟୋତ୍ସ୍ନା ବିହାରର ଅପୂର୍ବ ଦୃଶ୍ୟ ଏବେ ମଧ୍ୟ ଶହ ଶହ ଯାତ୍ରୀଙ୍କୁ ମୁଗ୍ଧ କରୁଛି ।

ମୁଁ ସେଦିନ ସନ୍ଧ୍ୟା ସୁଦ୍ଧା ଅଗରତାଲାକୁ ଫେରିଆସିଲି । କିନ୍ତୁ ଏବେବି ଯେମିତି ମୋର ମନେ ହେଉଛି ନୀରମହଲ ଆଜିବି ଅପେକ୍ଷା କରିଛି କେହି ଜଣେ ପ୍ରିୟ ଲୋକ ତାର ଆସିବେ । ସେ ଯେମିତି ଯୁଗ ଯୁଗ ଧରି ଅପେକ୍ଷାକରି ବସିଛି ତାଙ୍କର ଆସିବା ବାଟକୁ । ସେ ସେମିତି ବସିଥିବ ।

## କମଳା ସାଗର ଓ ବାଂଲାଦେଶରେ

ପରଦିନ ଆମେ ଅସିଲୁଁ କମଳା ସାଗର । ଅଗରତାଲାଠାରୁ ମାତ୍ର ୨୫ କିଲୋମିଟର ଦୂରରେ ଠିକ୍ ବାଂଲା ଦେଶ ସୀମାକୁ ଲାଗି ଏ ଛୋଟ ସ୍ଥାନଟି ପଛରେ କିନ୍ତୁ ବିରାଟ ଇତିହାସ ରହିଛି ।

ଛୋଟ ମୁଣ୍ଡା ପାହାଡ଼ଟିଏ । ସେଇଠି ଇତିହାସର ଜୀବନ୍ତ ସାକ୍ଷୀରୂପେ ଠିଆହୋଇଛି ଷୋଡ଼ଶ ଶତାବ୍ଦୀର ନାତିଦୀର୍ଘ କାଳୀମନ୍ଦିରଟିଏ । ମନ୍ଦିର ସାମନାରେ ଏକ ବିରାଟ ପୁଷ୍କରିଣୀ । ସେଇଟି ଖୋଳାଇଥିଲେ ପଞ୍ଚଦଶ ଶତାବ୍ଦୀର ରାଜା ମହାରାଜା ଧାନ୍ୟ ମାଣିକ୍ୟ । ସେ ପାଣିର କାଚଆଖି ଏବେବି ଝିଲ୍‌ମିଲ କରେ । ତା ନା କମଳା ସାଗର ।

ସ୍ଥାନଟି ବିଶେଷତ୍ୱ ରହିଛି । ଅନ୍ତତଃ ବର୍ଷକୁ ଦୁଇଥର ଯେ ସ୍ଥାନଟି ଉତ୍ସବ ମୁଖରିତ ହୋଇଉଠେ । ଥରେ ଏପ୍ରିଲ ମାସରେ “ଗରିଆ ପୂଜା” ସମୟରେ । ଗରିଆ ଉତ୍ସବ ମୌଳିକ ଭାବରେ ଆଦିବାସୀମାନଙ୍କର । କିନ୍ତୁ ଏବେ ତାକୁ

ଆଦିବାସୀ ଓ ଅଣ ଆଦିବାସୀ ଉଭୟେ ମିଶି ପାଳନ କରୁଥିବା ମହା ସମାରୋହରେ । ଗରିଆ ନୃତ୍ୟ ଏହାର ଏକ ବିଶିଷ୍ଟ ଅଙ୍ଗ । ଖର୍ଚି ପାଞ୍ଚଦିନ ଧରି ଏ ଉତ୍ସବ ପାଳିତ ହୁଏ । ଏ ଉତ୍ସବ ସମୟରେ ହଜାର ହଜାର ସଂଖ୍ୟାର ଛେଳି ଓ ପାରା ବଳି ପଡ଼େ ।

ଭାରତର ଉତ୍ତର ପୂର୍ବାଞ୍ଚଳ ରାଜ୍ୟମାନଙ୍କରେ ବିଶେଷକରି ଦେବୀ ମନ୍ଦିରରେ ଛେଳି ଏବଂ ପାରା ବଳି ଏକ ପ୍ରାଚୀନ ପରମ୍ପରା । ଗୁଆହାଟିର କାମାକ୍ଷା ମନ୍ଦିରରେ ପ୍ରତିଦିନ ଶହ ଶହ ଛେଳି ଓ ପାରା ବଳି ପଡ଼େ । ପର୍ବପର୍ବାଣିରେ ସେଠି ରକ୍ତର ସୁଅ ଛୁଟେ । ସେ ରକ୍ତର ସୁଅ ଯାଇ ପାଖରେଥିବା ପୋଖରୀରେ ମିଶିଲେ ପୋଖରୀ ପାଣି ବି ଲାଲ ହୋଇଯାଏ ।

ତେବେ ଯେ ଯା ହେଉ ତ୍ରିପୁରାର କମଳା ସାଗରଠାରେ ଆଉଥରେ ହୁଏ 'କେର' ପୂଜା । ଏ ଦୁଇଟି ପୂଜା ତ୍ରିପୁରୀମାନଙ୍କର ନିଜର ଏବଂ ସେମାନଙ୍କ ଦେଶର ମଙ୍ଗଳପାଇଁ ହୁଏ ବୋଲି ସେମାନଙ୍କର ବିଶ୍ୱାସ ।

ମୋ ପାଇଁ ଏସବୁ ଦେଖିବାର ସୁଯୋଗ ନଥିଲା । ମୁଁ ତେଣୁ ଏକପ୍ରକାର ନିରାଶହୋଇ ଫେରିବାକୁ ଯାଉଥିଲି । ମନ୍ଦିରର ବେଢ଼ ଉପରେ ଠିଆହୋଇ ଚାରିଆଡ଼ର ଦୃଶ୍ୟ ଉପରେ ଟିକିଏ ଆଖି ବୁଲେଇ ନେଉଥିଲି । ଯେତେ ନଜର ଆସୁଥାଏ ପାହାଡ଼ ମଇଦାନରେ । ଛୋଟ ସ୍ଥାନଟିରେ ଛୋଟ ଛୋଟ ୬।୭ଟା ପାନ ଓ ଚା ଜଳଖିଆ ଦୋକାନ । ତା'ଛଡ଼ା ସେଠି କିଛି ନଥିଲା ।

ମୋର ଗାଇଡ୍ ମୋତେ କହିଲେ ଏଇ ଯୋଉ ପୋଖରୀ ଦେଖୁଛନ୍ତି ତାର ହୁଡ଼ା ପାଖରୁ ଆରମ୍ଭ ହେଉଛି ବାଂଲା ଦେଶ ।

ବାଂଲା ଦେଶ ? ମୁଁ ପଚାରିଲି ଆଶ୍ଚର୍ଯ୍ୟ ହୋଇ ।

ହଁ ସାର୍, ପୋଖରୀ ପାଖରୁ ବାଂଲା ଦେଶର ସୀମା ଆରମ୍ଭ । ଚାଲନ୍ତୁ ଟିକିଏ ଦେଖି ଆସିବେ ।

ମୁଁ ଆଗେଇଗଲି । ସତକୁସତ ପୋଖରୀ ହୁଡ଼ା ତଳେ ଲାଗିଥିବା ମଇଦାନରେ ଗୋଟାଏ ବଡ଼ ମାଇଲଖୁଣ୍ଟ ଭଳିଆ ପଥର । ତାର ଏପାଖରେ ଲେଖା ହୋଇଛି ଇଣ୍ଡିଆ ଏବଂ ଅପର ପାଖରେ ଲେଖା ହୋଇଛି ବାଂଲା ଦେଶ । ଲାଗିଥିବା ପାଖରେ ଧାନଜମି । ଦୁଇଖଣ୍ଡ ଧାନଜମି ପରେ କେତୋଟି ଛୋଟ ଛୋଟ ଘର । ମିଞ୍ଜି ମିଞ୍ଜି ଆଲୁଅ ଜଳୁଥାଏ । କି ଘରଗୁଡ଼ାକ ଅବଶ୍ୟ ଜଣାପଡ଼ୁନଥାଏ ଝାପ୍‌ସା ଅନ୍ଧାରରେ । ଗୋଟାଏ ପୋଡ଼ାଏ ବିଜୁଳି ବତୀର ଖୁଣ୍ଟ ମଧ୍ୟ ନିଜର ଅସ୍ତିତ୍ୱ ଘୋଷଣା କରୁଥାଏ ।

ଗାଇଡ କହିଲେ ଏଇଟା କସବା ରେଲ ଷ୍ଟେସନ । ସେଇଟା ବାଂଲା ଦେଶରେ । ଢାକାରୁ ଚଟ୍ଟଗ୍ରାମଯାଏ ସେ ରେଲଲାଇନ ଯାଇଚି ଠିକ୍ ତ୍ରିପୁରାର ସୀମା ପାଖଦେଇ । ଆମ ଏଇ ଗାଁ'ରୁ ମାତ୍ର ପଚାଶ ଗଜ ଦୂରରେ ଗୋଟାଏ ରେଲ ଷ୍ଟେସନ । ରେଲଗାଡ଼ି ସେଠି ଦୈନିକ ଯା'ଆସ କରୁଚି । କିନ୍ତୁ ସେଥିରେ ଆମର ବସିବାର ଅଧିକାର ନାହିଁ । ବେଲ ପାଚିଲେ କୁଆର କି ଯାଏ ?

କଆଁବୁଦା ମୂଳରୁ ହଠାତ୍ ଲୋକଟିଏ ଠିଆହୋଇ ପଡ଼ିଲା । ଆମେ ଚମକି ପଡ଼ିଲୁ । ଏମିତି ସବୁବେଳେ ଭୟଥାଏ । କାରଣ ଆନ୍ତର୍ଜାତିକ ସୀମାରେଖା ପାଖରେ କୁଆଡ଼େ କଡ଼ା ପୋଲିସ ପହରା । ସୀମା ପାଖକୁ ଯିବା ମନା । ପୋଲିସ କାଲେ ଧରିବ ସେଇ ଡର ମୋର ଥାଏ ।

କଆଁବୁଦା ମୂଳରୁ ତାକୁ ବାହାରିବା ଦେଖି ମୁଁ ବଙ୍ଗଳାରେ ପଚାରିଲି କିଏ ତୁମେ ? ସେ କହିଲେ ମୁଁ ସେଇ ଷ୍ଟେସନ ପାଖରେ ରହେ । ଏଠାକୁ ଶୌଚକାର୍ଯ୍ୟ ପାଇଁ ଆସିଥିଲି ।

କି ଆଶ୍ଚର୍ଯ୍ୟ ? ତମେ ବାଂଲା ଦେଶର ଲୋକ । ଭାରତକୁ ଆସୁଚ ଶୌଚ ହେବାକୁ ? ଏଇଟାତ ବଡ ଅନ୍ୟାୟ । ମୁଁ ରହସ୍ୟ କରିବାକୁ ଯାଇ ତାକୁ କହିଲି । ସେ କହିଲେ ଏଇଟା ନୂଆକଥା ନୁହେଁ । ଯୁଗ ଯୁଗ ଧରି ଆମେ ଏଇ ପୋଖରୀ ଉପରେ ନିର୍ଭରକରି ଆସିଚୁଁ । ତା'ଛଡ଼ା ଆମର ଆଉ ଉପାୟ ନାହିଁ । ଆମର ସେଠି କୂଅ ଅଛି, କିନ୍ତୁ ପୋଖରୀର ଅଭାବ । ଅମେ କେବେ ଅନୁଭବ କରିନୁ ଏଇ କମଲା ସାଗର ପାଇଁ ।

ମୋଟେ କେହି ତମକୁ ଏ ଆଡ଼କୁ ଆସିବାକୁ ବାଧା ଦିଅନ୍ତିନି ? ମୁଁ ତାଙ୍କୁ ପଚାରିଲି ।

ପ୍ରଶ୍ନ ଉଠୁନି । ଆମେ ଦୁଇଦେଶର ଲୋକ ସତ କିନ୍ତୁ ଗୋଟିଏ ପରିବାର ପରି । ଆମେ ଯେମିତି ଏ ପୋଖରୀ ଉପରେ ପୂରା ନିର୍ଭରକରୁଁ ଏମାନେ ମଧ୍ୟ ସେମିତି ଆମ ଷ୍ଟେସନରେ ଯାଇ ପରିବା ବିକନ୍ତି । ମୁଁ ପଚାରିଲି ଟଙ୍କା ପଇସାର ନେଣଦେଣ କେମିତି ହୁଏ । ସେ କହିଲେ ଆମ ଟଙ୍କା ଏଠି ଚଳେ ଏବଂ ଆପଣଙ୍କ ଟଙ୍କା ମଧ୍ୟ ଆମର ସେଠି ଚଳେ । ସେଥିରେ କିଛି ଅସୁବିଧା ହୁଏନି । କିନ୍ତୁ ଏ କାରବାର ଏଇ ଆଖପାଖ ଅଞ୍ଚଳ ଭିତରେ ସୀମାବଦ୍ଧ । ଆଉ ବେଶୀ ଦୂରକୁ ନୁହେଁ ।

ମୋର ମନେ ପଡ଼ିଲା । ମୁଁ ଥରେ ବଙ୍ଗାଇଗାଁଉରୁ ଭୁଟାନରେ ଗୋଟିଏ ସହର "ଗେଲେଙ୍ଗ ଫୁ" କୁ ଯାଇଥିଲି, ସେ ସହରଟା ମଧ୍ୟ ଆସାମ ସୀମାରେ ।

ସେଠି ମଧ୍ୟ ସେଇ ଅବସ୍ଥା । ସୀମାଟା ନାଁକୁ ମାତ୍ର । ହାଟ ବଜାରରେ ସବୁ ମିଶାମିଶି ।

ପ୍ରବଳ ବେଗରେ ଏତକ ବେଳେ ଟ୍ରେନଟିଏ ମାଡ଼ିଆସିଲା । କସବା ଗୋଟିଏ ଗ୍ରେଟ ରେଲ ଷ୍ଟେସନ । ତେଣୁ ଏକ୍‌ସପ୍ରେସ୍ ଟ୍ରେନଟି ସେଠି ଛୁଡ଼ା ନ ହୋଇ ସିଧା ଚାଲିଗଲା ।

ଗୋଟାଏ ଆନ୍ତର୍ଜାତିକ ସୀମାରେଖା ପାଖରେ ଏତେ ସମସ୍ତ ଛୁଡ଼ାହେଲା ପରେ ମଧ୍ୟ ମୁଁ ଯେତେବେଳେ ପୋଲିସର ଦର୍ଶନ ପାଇଲିନି ମୋର ଟିକିଏ ସାହସ ବଢ଼ିଗଲା । ମୁଁ କହିଲି ତମ ଦେଶର ରେଲଷ୍ଟେସନ ମୋତେ ଟିକିଏ ଦେଖାନ୍ତୁନି । ସେ କହିଲା ସେଥିରେ କଅଣ ଅଛି, ଏବେ ଆସନ୍ତୁ ।

ମୁଁ କହିଲି ଆମ ପୋଲିସକୁ ମୁଁ ଏଠି ଦେଖୁନି । ତମ ପୋଲିସ ମୋତେ ସେଠି ହଇରାଣ କରିବନି ତ ? ମୁଁ ସେ କଥା ତାଙ୍କୁ କହିବାର କାରଣ ହେଲା ମୋ ମତରେ ପୋଲିସର ଜାତି ଗୋଟିଏ । ସେଇଟା ଭାରତର ହେଉ ବା ପାକିସ୍ଥାନର ହେଉ ବା ବାଂଲା ଦେଶର ହେଉ ।

ସେମାନଙ୍କର ଶିକ୍ଷା ଓ ସଂସ୍କୃତି ପ୍ରାକ୍ ସ୍ୱାଧୀନତା ଅମଳରୁ ଗୋଟିଏ ନାଳରେ ଗଡ଼ିଆସୁଛି । ସେ ନାଳର ରାସ୍ତା ଏବେବି ବନ୍ଦ ହୋଇନି । ଏବେ ମଧ୍ୟ ବଡ଼ ବଡ଼ ଅଫିସରଙ୍କୁ ବିଲାତ ପଠାଯାଉଛି ଟ୍ରେନିଂ ପାଇଁ । ମବ୍ ସାଇକୋଲୋଜିକୁ ବିଚାରକରି କିପରି 'ମବ୍‌କୁ ନିଠିଚାଳନା'' ଏବଂ ଫାଙ୍କା ଫାଏର୍' ଇତ୍ୟାଦି ବିଷୟରେ ମଧ୍ୟ ସେଠୁ ଟ୍ରେନିଂ ଦିଆଯାଏ ।

ମୋ କଥା ଶୁଣି ସେ ହୋ ହୋ ହସିଲେ । କହିଲେ ଠିକ୍ ଏଇ ସମୟରେ ଆମ ପୋଲିସ ଏବଂ ଆପଣଙ୍କ ପୋଲିସ ହୁଏତ ସାଥିହୋଇ ଏକାଠି ହୋଟେଲରେ ବସି ଚା ପିଉଥିବେ କମ୍ବା ଗାଁ ମୁଣ୍ଡ ଝୁମ୍ପୁଡ଼ିରେ ବସି ମହୁଲି ସେବନ କରୁଥିବେ । ତେବେ ସେମାନେ ଯାହା କରନ୍ତୁ ନା କାହିଁକି ଆମପ୍ରତି ସେମାନେ ଦୟାଶୀଳ । ଆପଣ ମୋ ସହିତ ଆସନ୍ତୁ । ମୁଁ ଆପଣଙ୍କୁ ସେ ଅଞ୍ଚଳଟା ବୁଲେଇ ଦେଖେଇ ଆଣିବି । ଆପଣ ନିର୍ଭୟରେ ଆସନ୍ତୁ ।

ମୁଁ ତାଙ୍କ ସହିତ ଚାଲିଲି । ବିଲ ଦୁଇଟା ପାର ହେଲା ପରେ ଗୋଟାଏ ଇଟା ପାଚେରି । ପାଚେରିଟା ଷ୍ଟେସନର ପଛ ପଟେ । ପାଚେରି ଦେହରେ ଗୋଟାଏ ବିରାଟ କଣା । ସେ କଣାଟା ପାଚେରି ଏ ପାଖରୁ ସେ ପାଖକୁ ଯିବାର ରାସ୍ତା । ସେଇ ପାଚେରିଟା ହିଁ ଭାରତ ବାଂଲା ଦେଶକୁ ଅଲଗା କରି ଦେଇଛି । ପାଚେରି ଡେଇଁଲେ ବାଂଲା ଦେଶର ରେଲ ଷ୍ଟେସନ । ସବୁବେଳେ ଗାଡ଼ି ଯିବା ଆସିବା

କରୁଛି । କିନ୍ତୁ ସେ ଗାଡ଼ିରେ ବସିବାର ସୌଭାଗ୍ୟ ଭାରତୀୟଙ୍କର ହୁଏ ନାହିଁ । କସବା ରେଳ ଷ୍ଟେସନ ପାର ହୋଇ ଶହ ଶହ ଭାରତୀୟ ଗାଁ ଭୂଇଁ, ଜନପଦ ଆଡ଼େଇ ଯୋଉ ରେଳଗାଡ଼ି ଏକଦା ଉଭୟ ଦେଶର ମଣିଷକୁ ଗୋଟିଏ ବୋଲି ଚିନ୍ତା କରି ନିଜ କୋଳରେ ଜାକି ଧରୁଥିଲା, ଦେଶ ବିଭାଜନ ପରେ ସେ ଗାଡ଼ି ଏବେ ବାପ, ମାଆ, ବନ୍ଧୁ, ପରିଜନର ସମସ୍ତ ଆତ୍ମୀୟତା ତଥା ଅନ୍ତରଂଗତାକୁ ଆଡ଼େଇ ଦେଇ ଦୁଇ ଭାଗ କରି ଦେଉଛି ।

ଦେଖିଲି ଷ୍ଟେସନ ପଛରେ ଥିବା ସେ ପାଚେରୀଟାର ଲମ୍ବ ଖୁବ୍ ବେଶୀରେ ପଚିଶ ଫୁଟ ହେବ ।

କିନ୍ତୁ ସେଇ ପଚିଶ ଫୁଟର ପାଚେରୀ ହିଁ ଯୁଗ ଯୁଗରୁ ଗଢ଼ି ଆସିଥିବା ମଣିଷର ହୃଦୟକୁ ଆଜି କଟା ତରଭୁଜ ପରି ଦୁଇଫାଳ କରି ଅଲଗା କରି ଦେଇଛି । କି ବୀଭତ୍ସ ସେ ଦୃଶ୍ୟ । କି ମର୍ମାନ୍ତିକ ଯନ୍ତ୍ରଣା'ର ସେ ସ୍ୱର ।

ତୀବ୍ର ବେଗରେ ଷ୍ଟେସନର ଗ୍ରୀଡ଼ କମ୍ପାଇ ଗୋଟାଏ ଏକ୍ସପ୍ରେସ ଗାଡ଼ି ମୋ ସାମନା ଦେଇ ବିରାଟ ଚିତ୍କାର କରି ଆଗକୁ ଚାଲିଗଲା । ସେ ବିକଟ ଯନ୍ତ୍ରଣାର ସ୍ୱର, ଭାରତ ବାଂଲା ଦେଶକୁ ଦୁଇଫାଳ କରିବାର ଚିତ୍କାରରୁ ରକ୍ଷା ପାଇବା ପାଇଁ ମୁଁ ଦୁଇ କାନକୁ ଚାପି ଧରିଲି ।

ଆମେ ଯେବେ ପ୍ଲାଟଫର୍ମ ଉପରେ ଠିଆ ହୋଇଥିଲୁ । ମୁଁ ପଚାରିଲି ଏଇଟା କୋଉ ଗାଡ଼ି ?

ସେ କହିଲେ 'ଉର୍ମି' ଏକ୍ସପ୍ରେସ । ଚଟ୍ଟାଗାଙ୍ଗରୁ ଢାକା ଯାଉଛି । ଘଣ୍ଟା ପରେ ଆସିବ ମହାନଗର ଏକ୍ସପ୍ରେସ ।

ଗାଡ଼ିର ନାଁ ଗୁଡ଼ିକ ବେଶ୍ ରୋମାଣ୍ଟିକ । ମନେ ମନେ ଭାବିଲି ବାଂଲା ଦେଶୀଙ୍କର ଟ୍ରେନର ନାମକରଣରେ ବେଶ୍ ରୁଚି ଅଛି । ଏମିତିକା ନାମକରଣ ଭାରତରେ ନାହିଁ ।

ମୋର ମନେ ପଡ଼ିଲା ଗୌହାଟିରୁ ତ୍ରିଭେନ୍ଦ୍ରମ ଯାଏ ଗୋଟାଏ ଟ୍ରେନ ଚାଲିଲା । ତା ନାଁ ଦିଆଗଲା ବିବେକାନନ୍ଦ ଏକ୍ସପ୍ରେସ୍ । ହୁଏତ ତ୍ରିଭେନ୍ଦ୍ରମ ପାଖରେ ଥିବା କନ୍ୟାକୁମାରୀର ବିବେକାନନ୍ଦ ରକ୍ ମେମୋରିଏଲକୁ ସ୍ମୃତିରେ ଧରି ରଖିବା ପାଇଁ ଏମିତି ନାମକରଣ କରିଯାଇଛି । କିନ୍ତୁ ସେ ନାଁଟା ଏବେ ଅନେକ ଦିନୁ ଜନମାନସରୁ ଲୋପ ପାଇଲାଣି । ସେଇ ତ୍ରିଭେନ୍ଦ୍ରମ ଏକ୍ସପ୍ରେସ୍ ହିଁ ଏବେ ପ୍ରଚଳିତ । ଆହୁରି ବି ଖଡ଼୍ଗପୁରରୁ ଭଦ୍ରକ ଯାଏ ସରକାର ଏକ୍ସପ୍ରେସ୍ ଟ୍ରେନ୍ ଟିଏ ଚଳେଇଲେ ବହୁ ଆଡ଼ମ୍ବର ସହିତ । ତା ନାଁ ଦେଲେ

ବାଘାଯତୀନ ଏକ୍‌ସପ୍ରେସ । ସେତେବେଳେ ମନେହେଲା ଓଡ଼ିଶାର ସମସ୍ତେ ବୋଧେ ଏଇନେ ମହାନ ବିପ୍ଳବୀ ବାଘାଯତୀନର ଆଦର୍ଶରେ ଅନୁପ୍ରାଣୀତ ହୋଇଗଲେଣି ।

କିନ୍ତୁ ପରେ ଦେଖିଲି ଏସବୁ ତୁଚ୍ଛା ମିଛ କଥା । ଗୋଟାଏ ଲୋକ ଦେଖାଣିଆ ପ୍ରହସନ । ଏବେ ଯଦି କେହି ସେ ବାଘାଯତୀନ ଏକ୍‌ସପ୍ରେସକୁ ଦେଖେ ତେବେ ସେ ତାକୁ କିପରି ଉପହାସିତ କରାଯାଉଛି ସେ କଥା ଜଣା ପଡ଼ିବ । ଆମେ ନିର୍ବିକାର । ପୂଜ୍ୟ ପୂଜାର ଗୁଣଅନ୍ଧ ଆମ ରକ୍ତରୁ କେବେଠୁ ଲୋପ ପାଇଲାଣି ।

ମୁଁ ସେ ଭଦ୍ରଲୋକଙ୍କ ସାଙ୍ଗରେ ଷ୍ଟେସନର ଘର ପାଖରେ ଘେରାଏ ବୁଲି ଆସିଲି । ଗୋଟାଏ ମଫସଲ ଗାଁର ଷ୍ଟେସନ ପରି । ଦୁଇ ତିନିଟା ଗ୍ରେଟ ବଡ଼ ଚା ଓ ଜଳଖିଆ ଦୋକାନ । ଦିଟା ଖଣ୍ଡେ ପାନ ଦୋକାନ ମଧ୍ୟ । ସେ ମୋତେ ଚା ଖାଇବାକୁ ଡାକିଲେ । ପ୍ଲାଟଫର୍ମରେ ଛିଡ଼ା ହୋଇ କିମ୍ବା ରାସ୍ତା କଡ଼ରେ ବା ବସ୍ ଷ୍ଟାଣ୍ଡରେ ଠିଆ ହୋଇ ବା ପଟାରେ ତିଆରି ବେଞ୍ଚରେ ବସି ସାଙ୍ଗସାଥି ମେଳରେ ଘଣ୍ଟା ଘଣ୍ଟା ଚା ପିଇ ସିଗାରେଟ ସେବନ କରିବାରେ ମୋର ପ୍ରଚୁର ଆନନ୍ଦ । ମୁଁ ମନା କରି ପାରିଲିନି । ଚା ପିଇ ସିଗାରେଟ୍‌ଟିରେ ନିଆଁ ଧରେଇଲା ବେଳକୁ ସେ କହିଲେ ଚାଲନ୍ତୁ ଆମ ବଜାରରେ ଘେରାଏ ବୁଲି ଆସିବେ ।

ଷ୍ଟେସନ ଏରିଆ ଡେଇଁଲେ ତାଙ୍କ ବଜାର । କିନ୍ତୁ ମୋ ହୃଦରେ ଛନକା ପଶିଲା । ଏତେବେଳଯାଏ ମୁଁ ଭୁଲି ଯାଇଥିଲି ଯେ ମୁଁ ଅନ୍ୟାୟ ଭାବରେ ବାଂଲା ଦେଶର ସୀମା ଭିତରକୁ ପଶି ଆସି ଏଠି ଅନଧିକାର ଚର୍ଚ୍ଚା ଆରମ୍ଭ କରି ଦେଇଛି । ନିଜକୁ କୁଣିଆ ଆସନରେ ବସେଇ ନିଜର ଅତିଥି ଚର୍ଚ୍ଚାରେ ମସ୍‌ଗୁଲ ହୋଇ ଯାଇଛି ।

ମୁଁ ଚାରିଆଡ଼କୁ ଅନେଇଲି । ଆଖି ପାଖରେ ଖାକିର ଦୈତ୍ୟ ଦାନବଙ୍କର ପ୍ରତିନିଧିମାନେ ନାହାନ୍ତି ତ ? ମୁଁ ଶଙ୍କିତ ହେଲି । କହିଲି ନାହିଁରେ ବାବା । ଆଉ ଭିତରକୁ ଯିବନି । ଯେତିକି ହେଲା ସେତିକି । ମୋ ଲେଖା ପାଇଁ ଯଥେଷ୍ଟ । ମୁଁ ପୁଣି ପାଚେଶ୍ୱର ଜଣା ବାଟେ ଭାରତକୁ ପଶି ଆସି ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲି । ଆଜି ବଞ୍ଚିଗଲି । ଏତେ ଭାବବହ୍ୱଳତା ମୋତେ ଶୋଭା ପାଏନି ।

ସେ ଦିନ ଗେଷ୍ଟ ହାଉସ୍‌କୁ ଫେରିବାକୁ ମୋତେ ରାତି ଦଶଟା ହୋଇଗଲା ।

ତା ପରଦିନ ଆମେ ଗଲୁଁ ଉଦୟପୁର । ରାସ୍ତାରେ ପଡ଼େ 'ସିପାହି ଜାଲା' । ସମ୍ପୂର୍ଣ୍ଣ ପ୍ରାକୃତିକ ପରିବେଶ ଭିତରେ ବଟାନିକେଲ ଓ ଜୁଲୋଜିକେଲ

ପାର୍କ, ଗୋଟିଏ କୃତ୍ରିମ ତଥା ମନୋରମ ହ୍ରଦର ଅନ୍ୟନାମ ପିପାସୁଜାଲା । ଆମେ DFO ଙ୍କ ଠାରୁ ପରମିଶନ ନେଇ ଜିପ୍‌ରେ ସେଠାଏ ବୁଲି ଆସିଲୁଁ । ତା ପରେ ଆସିଲୁଁ ହ୍ରଦ କୂଳରେ ଥିବା ଗେଷ୍ଟ ହାଉସ୍‌କୁ । ଗେଷ୍ଟ ହାଉସ୍‌ଟିକୁ ଦେଖିଲେ ମୋର ମାନସ ନଦୀ କୂଳରେ ଥିବା ଗେଷ୍ଟ ହାଉସ୍ କଥା ମନେ ପଡ଼ିଗଲା ।

ଘଞ୍ଚ ଜଙ୍ଗଲ ଭିତରେ ପୁରାପାଳି କାଠ ଓ ବାଉଁଶରେ ତିଆରି ଦୋମହଲା ଘରଟିକୁ ଦେଖିଲେ ମଣିଷ ଶୋକ ଶୋଚ ଭୁଲିଯାଏ । କାଠ ବାଉଁଶର ଏତେ ସୁନ୍ଦର କାରୁକାର୍ଯ୍ୟ ବି ହୋଇପାରେ ।

ଆମ ହାତରେ ସମୟ ବେଶୀ ନଥିଲା । ବେଣ୍ ସ୍ପିଡ଼ଦରେ ବୁଲାବୁଲି କରି ଆମେ ଉଦୟପୁର ଆଡ଼େ ମୁହାଁଇଲୁଁ ।

ଏଇଠି ମୁଁ ପ୍ରଥମ କରି ଦେଖିଲି ରବର ଗଛ । ରବର ଚାଷ ତ୍ରିପୁରାର ଗୋଟାଏ ଅର୍ଥକରୀ ଫସଲ । ପ୍ରଚୁର ବିଦେଶୀ ମୁଦ୍ରା ଏଥିରୁ ଆମଦାନୀ ହୁଏ । ଏଠି ଏକର ଏକର ରବର ଗଛର ବଗିଚା ଦେଖି ମୁଗ୍ଧ ହୋଇଗଲି ।

—o—

# ତ୍ରିପୁର୍ ସୁନ୍ଦରୀ କଥା

ଉଦୟପୁରରେ ଆମେ ଯାଇ ପହଞ୍ଚିଲୁଁ ପ୍ରାୟ ଦିନ ଦଶଟା ବେଳକୁ । ଉଦୟପୁର ଦକ୍ଷିଣ ତ୍ରିପୁର୍ ଜିଲ୍ଲାର ସଦର ମହକୁମା ଏବଂ ଗୋଟାଏ ପ୍ରସିଦ୍ଧ ତୀର୍ଥସ୍ଥାନ । ଅନେକଗୁଡ଼ିଏ ପୁରୁଣା ମନ୍ଦିର ସେଠାରେ ଅଛି । ଆମେ ଯାଇ ପ୍ରଥମେ ପହଞ୍ଚିଲୁଁ ତ୍ରିପୁର୍ ସୁନ୍ଦରୀ ମନ୍ଦିର ପାଖରେ ।

ଗ୍ରେଟ୍ ହ୍ରଦଟିଏ । ତା ନାଁ କଲ୍ୟାଣସାଗର । ତା'ର କୂଳରେ ଗୋଟିଏ ମୁଣ୍ଡା ପାହାଡ଼ ଉପରେ ଠିଆ ହୋଇଛି ତ୍ରିପୁର୍ ସୁନ୍ଦରୀ ମନ୍ଦିର । ମନ୍ଦିରଟା ସେମିତି କିଛି ବଡ଼ ନୁହେଁ କିମ୍ବା ମନ୍ଦିର ଗାତ୍ରରେ ସେମିତି କିଛି କାରୁକାର୍ଯ୍ୟ ଦେଖିଲିନି । କିନ୍ତୁ ତ୍ରିପୁର୍ ସୁନ୍ଦରୀଙ୍କୁ ଭାରତର ୫୧ଟି ପୀଠ ଭିତରୁ ଗୋଟିଏ ଧରାଯାଏ । ମୋ ସାଥିରେ ଯାଇଥିବା ଗାଇଡ୍ ମୋତେ କହିଲେ ମନ୍ଦିରଟି ନିର୍ମିତ ହୋଇଥିଲା ୧୫୦୧ ରେ ମହାରାଜା ଧାନ୍ୟ ମାଣିକ୍ୟଙ୍କ ଦ୍ୱାରା । ପରେ ବଜ୍ରପାତରେ ମନ୍ଦିରଟି ଭାଙ୍ଗି ଯିବାରୁ ୧୬୮୧ ରେ ପୁଣି ଥରେ ତାକୁ ନିର୍ମାଣ କରାଯାଇଥିଲା ।

ସ୍ଥାନୀୟ ଆର୍କିଓଲୋଜିଷ୍ଟମାନଙ୍କ ମତରେ ଏହି ମନ୍ଦିରରେ ଏକ ପ୍ରକାରର ଦୁଇଟି ମୂର୍ତ୍ତି ସ୍ଥାପିତ । ସେଥିରୁ ପ୍ରଥମଟିକୁ "ଗ୍ରେଟିମା" ବୋଲି କୁହାଯାଏ । ଅନ୍ୟଟି ପ୍ରାୟ ନଷ୍ଟ ହେବା ଉପରେ । ତେଣୁ ତା ବିଷୟରେ ବିଶେଷ ତଥ୍ୟ ଜଣାନାହିଁ ।

ମନ୍ଦିରରେ କିନ୍ତୁ ପ୍ରବଳ ଭିଡ଼ । ତ୍ରିପୁର୍ ସୁନ୍ଦରୀ ବା ତ୍ରିପୁରେଶ୍ୱରୀଙ୍କୁ ତ୍ରିପୁରୀମାନେ ଖୁବ୍ ମାନନ୍ତି ।

ସେଠାକାର ଅତ୍ୟନ୍ତ ଆକର୍ଷଣୀୟ ସ୍ଥାନଟି ହେଲା ମନ୍ଦିର ପାଖରେ ଥିବା ହ୍ରଦ । ତାର ନାଁ 'କଲ୍ୟାଣ ସାଗର' । ତାକୁ ସେଠି ହ୍ରଦ ବୋଲି କୁହା ଯାଉଥିଲେ ମଧ୍ୟ ତାକୁ ଗୋଟାଏ ବୃହତ୍ ଜଳାଶୟ ବୋଲି କୁହାଯାଇ ପାରେ । କାଚ ପରି ପାଣି ପରିଷ୍କାର ଓ ସୁନ୍ଦର । ପାଣି ଭିତରକୁ ପଶି ଯାଇଥିବା ପକ୍କା ପାହାଚରେ ଅପୂର୍ବ ଦୃଶ୍ୟ ଦେଖି ମୁଁ ସ୍ତବଧ ହୋଇଗଲି । ଶହ ଶହ ଲୋକ ଠିଆ ହୋଇ ବିଶାଳକାୟ ମାଛ ଓ କଇଁଛ ମାନଙ୍କୁ ମୁଢ଼ି ମୁଆଁ ଖାଇବାକୁ ଦେଉ ଥାଆନ୍ତି ।

ସେମାନେ ତାଙ୍କର ପରିବାରବର୍ଗଙ୍କୁ ନେଇ ଲୋକଙ୍କ ହାତରୁ ମୁକ୍ତି ଉପଭୋଗ କରୁଥାଆନ୍ତି ।

ଓଡ଼ିଶାର ପୁରୀ ଓ ଭୁବନେଶ୍ୱରରେ ଏ ଦୃଶ୍ୟ ବିରଳ ନ ଥିଲା । ମଥୁରାର ଯମୁନା ଜଳରେ ମଧ୍ୟ ଏ ଦୃଶ୍ୟ ଦେଖିବାକୁ ମିଳେ । କିନ୍ତୁ ଏତେ ବଡ଼ ବଡ଼ ମାଛ ଓ କଇଁଛ ମୁଁ ଆଗରୁ କେବେ ଦେଖି ନ ଥିଲି । ମୋର ଗାଇଡ ମୋତେ କହିଲେ ଏଠି କେହି ମାଛକୁ ମାରନ୍ତିନି । ବରଂ ମାଛ ବା କଇଁଛଟିଏ ମରିଗଲେ ତାକୁ ପୋଖରୀରୁ ଆଣି ପୋଖରୀ ତୁଠରେ ଶଂଖ, ଘଣ୍ଟା ଓ ବାଦ୍ୟ ଭିତରେ ସମାଧି ଦିଆଯାଏ । ଏ ସବୁ କାମ ମନ୍ଦିରର ବ୍ରାହ୍ମଣ ଦ୍ୱାରା ହିଁ ସମ୍ପାଦିତ ହୁଏ । ଶୁଣିଲି ସେ ଅଞ୍ଚଳରେ କେହି ମାଛ ଖାଆନ୍ତିନି । କଥାଟାକୁ ବିଶ୍ୱାସ କରି ହେଉ ନ ଥିଲେ ମଧ୍ୟ ନିହାତି ସତ କଥାଟିଏ ।

ଗୋଟାଏ ସହରରେ କେହି ମାଛ ଖାଆନ୍ତିନି' କଥାଟା ଯେମିତି ଆଶ୍ଚର୍ଯ୍ୟ-ଜନକ, ମାଛ ବା କଇଁଛ ମରିଗଲେ ତାକୁ ଶଂଖ ହୁଳହୁଳି ଭିତରେ ସମାଧି ଦେବା ସେତିକି ବୈଚିତ୍ର୍ୟମୟ । ମୋର ଗାଇଡ଼ କହିଲେ ମାଛ ଓ କଇଁଛ-ମାନଙ୍କୁ ସେଠି ତ୍ରିପୁରାମାନଙ୍କ ଆରାଧ୍ୟଦେବୀ ତ୍ରିପୁରସୁନ୍ଦରୀଙ୍କ ଅବତାର ବୋଲି ଧରାଯାଏ ।

—o—

# ଜଗନ୍ନାଥ ମନ୍ଦିର

ଉଦୟପୁରରେ ମୋର ଅନ୍ୟତମ ପ୍ରଧାନ ଆକର୍ଷଣ ହେଉଛି ଥିଲା ସେଠାକାର ଜଗନ୍ନାଥ ମନ୍ଦିର । ଏ କଥା ମୁଁ ଆଗରୁ ଜାଣି ନ ଥିଲି ଯେ ସେଠି ମଧ୍ଯ ଗୋଟାଏ ଜଗନ୍ନାଥ ମନ୍ଦିର ଅଛି ବୋଲି ।

ଓଡ଼ିଶା ବାହାରେ ଅନେକ ସ୍ଥାନରେ ମୁଁ ଜଗନ୍ନାଥ ମନ୍ଦିର ଦେଖିଛି । ଜଗନ୍ନାଥ କେବେହେଲେ କେବଳ ଓଡ଼ିଆଙ୍କର ନ ଥିଲେ କି ଏବେ ମଧ୍ଯ ନାହାନ୍ତି । ଓଡ଼ିଶା ବାହାରେ ତାଙ୍କର ବ୍ୟାପ୍ତି ଅନେକ ଦିନୁ ପ୍ରସାର ଲାଭ କରି ସାରିଛି । କିନ୍ତୁ ଏ ଜଗନ୍ନାଥଙ୍କର ଇତିହାସ ଯେ ଏତେ ପୁରୁଣା ସେ କଥା ମୁଁ ସେଇଠି ଜାଣିଲି ।

ଉଦୟପୁର ମଧ୍ଯସ୍ଥଳରେ ଅଛି ଗୋଟିଏ ପୋଖରୀ । ତା ନାଁ "ଜଗନ୍ନାଥ ଦିଘି" । ତାରି କୂଳରେ ଠିଆ ହୋଇଛି ମନ୍ଦିରଟିଏ । କିନ୍ତୁ ହାୟ ସେ ମନ୍ଦିର ଆଉ ମନ୍ଦିର ହୋଇ ନାହିଁ । ସବୁ ଭାଙ୍ଗିରୁଜି ଗଲାଣି । ଖାଲି ମାଟିକୁଦ କହିଲେ ଚଳେ ।

ଇତିହାସ କହେ ମହାରାଜ ବିଜୟ ମାଣିକ୍ୟ (୧୫୨୯-୧୫୭୦) ପୁରୀରୁ ଜଗନ୍ନାଥ ବିଗ୍ରହ ଆଣି ସେଠି ସ୍ଥାପନା କରିଥିଲେ । ପରେ ଏହି ବିଗ୍ରହକୁ ମହାରାଜା ନେଇ କୁମିଲ୍ଲା (ଏବର ବାଂଲାଦେଶ) ଠାରେ ସ୍ଥାପନ କଲେ । ଆଉ କେତେକଙ୍କ ମତରେ ସେ ମନ୍ଦିର ପ୍ରକୃତରେ ମହାରାଜା ଗୋବିନ୍ଦ ମାଣିକ୍ୟ ଏବଂ ତାଙ୍କ ଭାଇ ଜଗନ୍ନାଥ ଦେବଙ୍କ ଦ୍ୱାରା ୧୬୬୧ ରେ ନିର୍ମିତ ହୋଇଥିଲା ।

ତେବେ ପ୍ରକୃତ କଥା ଯାହା ହେଉନା କାହିଁକି 'ଜଗନ୍ନାଥ ଦିଘି" କୂଳରେ ସେହିକି ଜଗନ୍ନାଥ ମନ୍ଦିର ଦେଖି ମୋ ମଥା ଆପେ ଆପେ ଓଡ଼ିଶାର ଗର୍ବ ଓ ଗୌରବ ମହାପ୍ରଭୁ ଜଗନ୍ନାଥଙ୍କ ପାଖରେ ନଇଁ ଆସିଲା ।

କିନ୍ତୁ ଗୋଟିଏ କଥାରେ ମୋ ମନ ଭାରାକ୍ରାନ୍ତ ହୋଇ ପଡ଼ିଲା ଇତିହାସର ଘନଘଟା ଭିତରେ ପୁରୀରୁ ଯାଇଥିବା ଜଗନ୍ନାଥ ବିଗ୍ରହ ଉଦୟପୁରରୁ ପୁଣି କାହିଁକି କୁମିଲ୍ଲା ଗଲେ ଏବଂ ସେଠି ସେ ଏବେ କି ଅବସ୍ଥାରେ ଅଛନ୍ତି ସେ କଥା ମୋର ଗାଇଡ ମୋତେ କହି କରି ପାରିଲେନି ।

ଅନେକ କାରଣରୁ ଉଦୟପୁରର ଆକର୍ଷଣ ଏବେ ମଧ୍ୟ ମୋ ମନକୁ ଛୁଇଁଯାଉଛି । ସେଇଠି ସେଇ ସହରର ଅପର ପାର୍ଶ୍ୱରେ ମାତ୍ର ତିନି କିଲୋମିଟର ଦୂରରେ ଅପରୂପା 'ଗୋମତୀ' ନଦୀ କୂଳରେ ଅଛି ଭୁବନେଶ୍ୱରୀ ମନ୍ଦିର । ଆଜି ସେ ମନ୍ଦିର ମଧ୍ୟ ରକ୍ଷଣାବେକ୍ଷଣ ଅଭାବରୁ ଭାଙ୍ଗି ଗଲାଣି । ଏବେ କୁଆଡ଼େ ପ୍ରତ୍ନତାତ୍ତ୍ୱିକ ବିଭାଗ ତ୍ରିପୁରାର ଅନେକ ମନ୍ଦିରର ମରାମତି କାର୍ଯ୍ୟ ହାତକୁ ନେଇଛି । କିନ୍ତୁ ମୁଁ ଫେରିବା ଅନେକ ଡେରି ହୋଇଗଲା । ଭୁବନେଶ୍ୱରୀ ମନ୍ଦିରର କାମ ମଧ୍ୟ କିଛି ହୋଇଛି । ଏଇଠି ଏଇ ଗୋମତୀ କୂଳରେ ବିଶ୍ୱକବି ରବୀନ୍ଦ୍ର ନାଥ ତାଙ୍କର ନାଟକ "ବିସର୍ଜନ" ଏବଂ "ରାଜର୍ଷି" ରଚନା କରିଥିଲେ ।

ଅଗରତାଲାରେ ଆହୁରି ଗୋଟାଏ ଜଗନ୍ନାଥ ମନ୍ଦିର ମଧ୍ୟ ଅଛି । ଭୁବନେଶ୍ୱରୀ ମନ୍ଦିର ଏବଂ ବୁଢ଼ାଟାଯାକ ଜଗନ୍ନାଥ ମନ୍ଦିରର ଅବସ୍ଥାନରୁ ଜଣା ଯାଉଛି ତ୍ରିପୁରା ଓ ଓଡ଼ିଶା ଭିତରେ ଅନେକ ଦିନରୁ ଗୋଟାଏ ସମ୍ପର୍କ ରହି ଆସିଛି । ଆସାମ ଓ ତ୍ରିପୁରାର ଟି' ବଗିଚାମାନଙ୍କରେ ସେତେବେଳେ ଅସଂଖ୍ୟ ଓଡ଼ିଆ କାମ କରୁଥିଲେ । ଏ ସମ୍ପର୍କ ହୁଏତ ଆହୁରି ଦୃଢ଼ ହୋଇପାରି ଥାଆନ୍ତା ଯଦି ପରବର୍ତ୍ତୀ କାଳରେ ବାଂଲାଦେଶ ସୃଷ୍ଟି ଆମ ଭିତରେ ଭୌଗୋଳିକ ଦୂରତ୍ୱର ବ୍ୟବଧାନକୁ ବଢ଼େଇ ଦେଇ ନଥାଆନ୍ତା ।



# କଲ୍ୟାଣୀ ଓ ମୁଁ

ଲକ୍ଷ୍ମୀପୂଜା ପରଦିନର କଥା । ଅଗରତାଲା ସହରର ମେନ୍ ମାର୍କେଟରେ ଗୋଟିଏ ହାଣ୍ଡିକ୍ରାଫ୍ଟ ଦୋକାନରେ ଛିଡ଼ା ହୋଇ ମୁଁ ଦେଖୁଥାଏଁ ସେଠା ହାଣ୍ଡି କ୍ରାଫ୍ଟର ସୌନ୍ଦର୍ଯ୍ୟକୁ । ମୁଁ ଆଗରୁ କହିଛି ଉତ୍ତର ପୂର୍ବାଞ୍ଚଳ ରାଜ୍ୟ ସମୂହର କାଠ ଓ ବାଉଁଶ ତିଆରି କାରୁକାର୍ଯ୍ୟ ଦେଖିଲେ ବିମୋହିତ ହେବାକୁ ହୁଏ । ସତରେ ସେଗୁଡ଼ିକ ଯେ କାଠ ଓ ବାଉଁଶରେ ତିଆରି ଏ କଥା ମୋଟେ ବିଶ୍ୱାସ କରି ହୁଏନି ।

ଦୋକାନଟାରେ ପ୍ରବଳ ଲୋକ ଗହଳି । ରାଜ୍ୟ ସରକାର ସେ ଦୋକାନର ପୃଷ୍ଠ ପୋଷକତା କରନ୍ତି । ବିରାଟ ଦୋକାନ । ଏମିତି ଭାବରେ ଦୋକାନରେ ଜିନିଷ ଗୁଡ଼ାକ ସଜେଇ ରଖା ଯାଇଛି ଯେ ଲୋକେ ଟାଣି ହୋଇ ଆସୁଚନ୍ତି । ପୁରୁଷ ଅପେକ୍ଷା ସ୍ତ୍ରୀ ବେଶୀ । ଜିପୁରାର ପୂଜାର ବଜାର ଲକ୍ଷ୍ମୀପୂଜା ବେଳେ ବେଶୀ ପିକ୍ ଅପ୍ କରେ । କାରଣ ସେମାନେ ଧର୍ମତଃ ବଂଗାଳୀ ହୋଇ ଥିଲେ ମଧ୍ୟ ଦୁର୍ଗାଙ୍କ ଅପେକ୍ଷା ଲକ୍ଷ୍ମୀ ସେଠି ବେଶୀ ଆଦର ପାଆନ୍ତି ବୋଲି ମନେ ହେଲା ।

ଛୋଟ ଛୋଟ ବାଉଁଶ ଖଣ୍ଡରେ ତିଆରି ଗାନ୍ଧି, ସୁଭାଷ ଓ ବିବେକାନନ୍ଦଙ୍କ ଅବିକଳ ମୂର୍ତ୍ତି ଗୁଡ଼ିକ ମୁଁ ଦେଖୁଥିବା ବେଳେ ହଠାତ୍ ଝିଅଟିଏ ଆସି ମୋ ପାଦ ଛୁଇଁଲା । "ଦାଦା, ଆପନି ଏଖାନେ ?"

ମୋ ଆଖିକୁ ମୁଁ ବିଶ୍ୱାସ କରି ପାରିଲିନି । ମୋ ସାମନାରେ କଲ୍ୟାଣୀ । କଲ୍ୟାଣୀ ଦାସ । ସେଇ ବୀଣା ଜିଣା କଣ୍ଠ । ସଜେଇ ରଖା ଯାଇଥିବା ସରୁ ସରୁ ଚକ ଚକ କରୁଥିବା ଧଳା ଦାନ୍ତ ଗୁଡ଼ିକୁ ଦେଖେଇ ସେ ସେମିତି ହସୁଥିଲା । ଅଫୁରନ୍ତ ହସର ଝରଣା ତା ପାଟିରୁ ଫିଟି ପଡ଼ୁଥାଏ । ଟଣା ଟଣା ଆଖି ଦୁଇଟା ଯେମିତି ସ୍ୱପ୍ନ ଭିତରେ ଏଇ ପ୍ରାକୃତିକ ପରିବେଶ ଭିତରେ ଆହୁରି ଅନେକ ଆକର୍ଷଣୀୟ ହୋଇ ଉଠିଛି । କିଛି ସମୟ ମୋ ପାଟିରୁ କଥା ବାହାରିଲାନି । ମୁଁ ମୁଗ୍ଧ ହୋଇ ତାକୁ ଦେଖୁଥିଲି ।

"ତୁଇ ଏଖାନେ ?" କେମିତି କେଜାଣି ମୋ ପାଟିରୁ ଅଜ୍ଞାନକ ବାହାରି ପଡ଼ିଲା ଶବ୍ଦ କେତୋଟି ।

"ମୋ ଘରତ ଏଇଠି । ମୁଁ ଏଇଠି ଥାଏ ।" ସେ କହିଲା । ଇଏ ହଉଚି ସେଇ କଲ୍ୟାଣୀ ଯିଏ ବଂଗାଇ ଗାଁରେ ଆମ C. I. S. F. ୟୁନିଟରେ ତା ଭାଇ ପାଖରେ ବେଶ କିଛି ଦିନ ଥିଲା । ସୁନ୍ଦର ଗଳାଟିଏ ପାଇଚି । ସୁନ୍ଦର ଗୀତ ଗାଏ । ଆମ ୟୁନିଟର ବିଭିନ୍ନ ଉତ୍ସବାନୁଷ୍ଠାନରେ ଯେତେବେଳେ ସାଂସ୍କୃତିକ କାର୍ଯ୍ୟକ୍ରମ ହୁଏ ସେତେବେଳେ ମୁଁ କଲ୍ୟାଣୀକୁ ସେ ଦାୟିତ୍ୱ ଦେଇ ନିଶ୍ଚିନ୍ତ ହୋଇଯାଏଁ ।

ବଂଗଳାରେ "ତୁଇ" ଶବ୍ଦଟାରେ ଯେତେ ଆତ୍ମୀୟତା ଥିଲେ ମଧ୍ୟ ଗୋଟାଏ ଅଜଣା ଜାଗାରେ ସ୍ୱଳ୍ପ ପରିଚୟର ପରିବେଶ ଭିତରକୁ କିପରି କେମିତି ପଶି ଆସିଥିବା ଗୋଟାଏ ଝିଅ ପ୍ରତି ପ୍ରୟୋଗ କରିବାର ଅବସାଦବୋଧ ମୋତେ ବ୍ୟସ୍ତ କରି ପକାଇଲା । ଟିକିଏ ସଙ୍କୋଚିତ ହୋଇ ମୁଁ କହିଲି "ତୁମକୁ ଏଠି ଦେଖିବି ବୋଲି ମୁଁ ମୋଟେ ଆଶା କରି ନ ଥିଲି ।"

କଲ୍ୟାଣୀ ଖାଲି ଗଳାରେ ଗୀତ ଗାଏ । ହାରମୋନିୟମଟିଏ ମଧ୍ୟ ବଜେଇ ଆସେନା । ସେ କହେ ତାକୁ କେହି ଗୀତ ଶିଖେଇନି । ସେ ଏମିତି ଶୁଣି ଶୁଣି ଶିଖି ଯାଇଚି । କିନ୍ତୁ ତା'ର ସଙ୍ଗୀତର ମୂର୍ଚ୍ଛନା ଏବେବି ମୋର ମନେ ଅଛି ।

ସେଇ କଲ୍ୟାଣୀ ମୋ ଆଗରେ ଠିଆ ହୋଇଚି ।

ମୁଁ କହିଲି ଗୋଟାଏ ସରକାରୀ କାମରେ ମୁଁ ଏଠାକୁ ଆସିଥିଲି । ବେଶ୍ ଟିକିଏ ବୁଲାବୁଲି ମଧ୍ୟ ହେଲାଣି ।

ଆପଣ ଆମ ଘରକୁ ଯିବେନି ?

ଜୟପୁରକୁ ଆସି ତୁମ ଘରକୁ ନ ଗଲେ ଆଉ ବିଶେଷ କଣ ତୁମେ ଯେତେବେଳେ ଏଠି ଅଛ ସେତେବେଳେ ମୋ ଯାତ୍ରାଟା ଅସଂପୂର୍ଣ୍ଣ ରହିଯିବ । କିନ୍ତୁ ଯିବି କେତେବେଳେ ? ଆହୁରି ଅନେକ କାମ ବାକି ପଡ଼ିଚି । ଅନେକ ଜାଗା ମଧ୍ୟ ଦେଖିବାର ଅଛି ।

ସେ କହିଲା, ତେବେ ଆପଣ ଏବେ ମୋ ସହିତ ଚାଲନ୍ତୁ ।

ମୁଁ ଦେଖିଲି ତାର ନିମନ୍ତ୍ରଣରେ ଯେତିକି ଆନ୍ତରିକତା ସେତିକି ଅକୁଣ୍ଠ ଇଚ୍ଛା ।

ସନ୍ଧ୍ୟାବେଳକୁ ଯାଇ ହେବ । ଅଫିସରେ ଆଉ ଟିକିଏ କାମ ବାକି ଅଛି । ସେତିକି ସରିଗଲେ ମୁଁ ନିଶ୍ଚିନ୍ତ ।

ସେ ଖୁସି ହୋଇଗଲା । ସନ୍ଧ୍ୟାବେଳକୁ ଆଜି ଆମ ଘରେ ପୂଜା । ତେଣୁ ଭୋଜନଟା ମଧ୍ୟ ଆମ ଘରେ ହେବ ।

ମୁଁ କହିଲି ଲକ୍ଷ୍ମୀ ପୂଜାତ କାଲିଠୁ ସରିଲଣି ।

ନାଁ, ଅସଲ ପୂଜାଟା ଆଜି । ଝିପୁରିରେ ଆଜି ଉତ୍ସବର ସବୁଠୁ ବଡ଼ ଦିନ, ଆପଣ ନିଶ୍ଚୟ ଆସିବେ ।

ଠିକ ସନ୍ଧ୍ୟା ସାତଟା ବେଳକୁ ମୁଁ କଲ୍ୟାଣୀ ଘରେ ପହଞ୍ଚିଲି । ସେ ଯେପରି ତା ଘରର ଅବସ୍ଥିତିଟା ମୋତେ କହିଥିଲା ସେଥିରେ ସେଇଟା ମୋତେ ପାଇବାକୁ ମୋଟେ କଷ୍ଟ ହେଲାନି । ଡ୍ରାଇଭର ଗାଡ଼ିଟାକୁ ନେଇ ଠିକ ଗେଟ ପାଖରେ ପହଞ୍ଚିଗଲା ।

କଲ୍ୟାଣୀର ଘରଟା ସହର ଠାରୁ ଟିକିଏ ଦୂରରେ । ତେଣୁ ସେଇଟାକୁ ବରଂ ଗୋଟିଏ ଗାଁ କହିଲେ ଠିକ ହେବ । ଆମ ଗାଡ଼ି ଗେଟ ପାଖରେ ପହଞ୍ଚିବା ମାତ୍ରେ କଲ୍ୟାଣୀ, ତାର ବାପା ମାଆ ମୋତେ ଆସି ପାଛୋଟି ନେଲେ । ମୁଁ ତାର ବାପା ମାଆଙ୍କୁ କେବେ ଦେଖି ନଥିଲି । କଲ୍ୟାଣୀ ମୋତେ ପରିଚୟ କରେଇ ଦେଲା । କଲ୍ୟାଣୀର ଘରର ପରିବେଶଟା ଗୋଟାଏ କାନନ୍ଭାସ୍‌ରେ ଅଙ୍କା ଚିତ୍ରଟିଏ ପରି । ଘଞ୍ଚ ଗୁଆ ଓ ନଡ଼ିଆ ବଣ ଭିତରେ ଛୋଟ ଟିଣ ଘରଟା ନୂଆ ବୋହୂଟି ପରି ଓଢ଼ଣା ଟାଣି ଠିଆ ହୋଇଥାଏ । ଟିଣ ଛାତ ଉପରେ ତୋଫା ଜହ୍ନ ଆଲୁଅ କୁଢ଼େଇ ହୋଇ ପଡ଼ିଥାଏ । ମୁଁ ଆତ୍ମବିଭୋର ହୋଇ ପଡ଼ିଲି । ଖୁବ୍ ନିକଟରେ ଛୋଟ ପାହାଡ଼ଟିଏ । ପାହାଡ଼ ତଳୁ ବସ୍ତି ଭିତରୁ ପୂଜା ଉପଲକ୍ଷେ ବାଜୁଥିବା କୋଉ ଗୋଟାଏ ପୂର୍ବବଙ୍ଗୀୟ ପଲ୍ଲୀ ଗୀତର ମୂର୍ଚ୍ଛନା ଢୋଲ୍ ବାଜାର ତାଳ ସହିତ ମଝିରେ ମଝିରେ ଭାସି ଆସୁଥାଏ ।

ମୁଁ କଲ୍ୟାଣୀକୁ କହିଲି ଚେୟାରଗୁଡ଼ିକ ଏଇ ବାହାରକୁ ଆଣ । ଏଇ ଗୁଆ ବଣରେ ବସିବା । ତା ବାପା ଟିକିଏ ବୋଧେ କୁଣ୍ଠା କୁଣ୍ଠା ହେଉଥିଲେ । କିନ୍ତୁ କଲ୍ୟାଣୀ କହିଲା, କବି ଲୋକତ ତାଙ୍କୁ ଯୋଉଟା ଭଲ ଲାଗୁଚି କରିଯାଉ ।

ସେଦିନ ଦେଖିଲି କଲ୍ୟାଣୀର ଘରଟା ଅପୂର୍ବ ସାଜସଜ୍ଜାରେ ସଜ୍ଜିତ । ଏଇଟା ଅବଶ୍ୟ ଲକ୍ଷ୍ମୀପୂଜା ପାଇଁ । ପ୍ରତି ଘର, ସେଇଟା କୁଡ଼ିଆ ହୋଇଥିଲେ ମଧ୍ୟ, ଅତି ଚମତ୍କାର ଭାବରେ ସଜା ହୋଇଥାଏ । ପୂଜା ମଧ୍ୟ ହୁଏ ଷୋଡ଼ଶ ଉପଚାରରେ ।

ଆମେ ସମସ୍ତେ ଆସନ ଜମେଇ ବସୁ ବସୁ ଚିରାଚରିତ ପ୍ରଥାରେ ଅଭ୍ୟାଗତି କରି ରାଜ୍ୟ ବିଜୁଳି ବିଭାଗ ଆଲୁଅ ସବୁକୁ ଲିଭେଇ ଦେଲେ । କଲ୍ୟାଣୀର ବାପା ମାଆ ଅପ୍ରସ୍ତୁତ ହୋଇ ପଡ଼ିଲେ । କଲ୍ୟାଣୀ ବୋଧେ ଲଣ୍ଠନଟିଏ ଆଣିବାକୁ ଗଲା

ଯାଉଥିଲି । ମୁଁ ତାକୁ ପଛରୁ ଡାକିଲି । କହିଲି, କଅଣ ଦରକାର ? କହୁଛି ପଢ଼ୁଛି । ଆଉ କଅଣ ?

ବକୁଳ ଚାଲିଗଲା ପରେ ଜହ୍ନ ଆଲୁଅ ଆହୁରି ତୋଫା ହୋଇ ଫୁଟି ଉଠିଲା । ମୋତେ ଲାଗିଲା ସମଗ୍ର ପରିବେଶ ଭିତରେ ଜହ୍ନଟା ଯେମିତି ନୂଆ କରି ନୂଆ ରୂପରେ ମୋ ଆଗରେ ଠିଆ ହୋଇ କହିଲା, ମୋତେ ଦେଖିବ ପରା ? ଏଇ ଦେଖ । କୃତ୍ରିମ ଆଲୁଅରେ ମୋତେ କଅଣ ଦେଖିବ ? ମୋ ନିଜ ଆଲୁଅରେ ମୋତେ ଦେଖ । ମୋ ନିଜ ରୂପରେ ତେଜରେ ମୋତେ ଦେଖ । ଏବେ କୁହ, ମୋତେ ତୁମକୁ କେମିତି ଲାଗୁଛି ?

ମୋ ଆଖି ମୁଦି ହୋଇ ଆସିଲା ନିମିଷକ ପାଇଁ । ପର ମୁହୂର୍ତ୍ତରେ ଦେଖିଲି ମୋ ଆଗରେ କଲ୍ୟାଣୀ ଠିଆ ହୋଇଛି । ଆଉ ସେମିତି ମଲ୍ଲୀଫୁଲର ହସଟିଏ ହସି କହିଲା ମୋତେ କିଛି କହିଲେ !

କଲ୍ୟାଣୀ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରର ଝିଅ । ତା ବାପାଙ୍କର ଆର୍ଥିକ ଅବସ୍ଥା ମୋଟେ ଭଲ ନଥାଏ । ତା ଭାଇର ଚାକିରି ଉପରେ ସମସ୍ତେ ନିର୍ଭର କରନ୍ତି । କିନ୍ତୁ ସେମାନଙ୍କର ଘୋର ଜାକଜମକରେ ଲକ୍ଷ୍ମୀପୂଜା ହେଉଥାଏ ସେଥିରୁ ମନେହେଲା ସେମାନେ ବେଶ ଅବସ୍ଥାପନ୍ନ ପରିବାରର ବୋଲି ।

ତାହାହିଁ ବୋଧେ ଗୋଟାଏ ସାଂସ୍କୃତିକ ସଚେତନ ଜାତିର ଲକ୍ଷଣ ।

ପ୍ରାୟ ଦଶ ପନ୍ଦର ପ୍ରକାର ପିଠା ଓ ମିଠା ଖାଇ ମୁଁ ରାତି ଦଶଟା ବେଳକୁ କଲ୍ୟାଣୀ ଘରୁ ବିଦାୟ ନେଇ ଆସିଲି । କଲ୍ୟାଣୀ ଓ ତାର ବାପା ମାଆର ଆଦର ଓ ଅଭ୍ୟର୍ଥନା ମୋର ବରାବର ମନେ ରହିବ ।



# ସେଦିନ ଅଗରତାଲାରେ

କହିବାକୁ ଗଲେ ସେଇଟାହିଁ ଥିଲା ମୋର ତ୍ରିପୁରାରେ ଶେଷ ଦିନ । ତା ପରଦିନ ମୋତେ ଫେରିବା'କୁ ପଡ଼ିବ । ମୋର ରିଟର୍ଣ୍ଣ ଜର୍ଣ୍ଣି ପାଇଁ ପ୍ଲେନ ଟିକେଟ ଆଗରୁ ଗୌହାଟିରୁ ହୋଇ ସାରିଛି । ତେଣୁ ସେଇ ଅନୁସାରେ ମୋତେ ପ୍ରସ୍ତୁତ ହେବାକୁ ପଡ଼ିବ । ଅଗରତାଲାରେ ମୋର କେତେଟା ସ୍ଥାନ ଦେଖିବା ନିହାତି ଦରକାର । ତେଣୁ ମୁଁ ଠିକ୍ କଲି ସେଦିନ ସକାଳଟା ଅଫିସ ଯାଇ ଯାହା କାମ ଅଛି ତାକୁ ସାରିଦେବି । ଉପରଓଳି ଅଗରତାଲା ସହରଟା ବୁଲି ଦେବି । ସହରଟା ଦେଖି ଥିଲେ ମୋତେ ମୋର ଭ୍ରମଣ ବୃତ୍ତାନ୍ତ ନୋଟ କରିବାରେ ସୁବିଧା ହେବ ।

ମୁଁ ମୋଟାମୋଟି ଏଇ କାର୍ଯ୍ୟକ୍ରମ କଥା ମନେ ମନେ ଚିନ୍ତା କରୁଥିଲି ବେଳେ ଫୋନ୍ ଆସିଲା । ଡେପୁଟି କମାଣ୍ଡାଣ୍ଟ ମି: ଯୋଶୀଙ୍କ ଠାରୁ । ତାଙ୍କୁ ମୋ କାର୍ଯ୍ୟକ୍ରମ କଥା କହି ଦେବାରୁ ସେ ମୋତେ କହିଲେ ରାତିରେ ସେଇ ଗେଷ୍ଟ ହାଉସ୍‌ରେ **ONGC** କମ୍ପାନୀର କେତେଜଣ ଅଫିସର ଆପଣଙ୍କୁ ଡିନର ପାଇଁ ନିମନ୍ତ୍ରଣ କରିଛନ୍ତି ।

ଏଥିରେ କିଛି ସ୍ୱାଭାବିକତା ନ ଥିବାରୁ ଏବଂ ବିଶେଷ କରି ମୁଁ ଗୋଟିଏ ତଦନ୍ତ କାମରେ ଏଠାକୁ ଆସିଥିବାରୁ ଏ ପ୍ରକାର ଡିନରକୁ ମୁଁ ପ୍ରଥମେ କୁଣ୍ଠା କୁଣ୍ଠା ହେଉଥିଲି । କିନ୍ତୁ ଶ୍ରୀ ଯୋଶୀ ଯେତେବେଳେ ଏହା ସଂପୂର୍ଣ୍ଣ ବ୍ୟକ୍ତିଗତ ଏବଂ ଏଥିରେ ପାଞ୍ଚ ସାତଜଣରୁ ବେଶୀ ଆସିବେନି ବୋଲି କହିବାରୁ ମୁଁ ତାଙ୍କୁ ମନା କରି ପାରିଲିନି ।

ପରବର୍ତ୍ତୀ କାର୍ଯ୍ୟକ୍ରମ ମୋର ଶ୍ରୀ ଯୋଶୀ ଠିକ୍ କରି ଦେଇଥିଲେ । ତାଙ୍କ ସାହାଯ୍ୟ ପାଇ ନଥିଲେ ମୁଁ ବୁଲିବୁଲି ମୋଟେ କରିପାରି ନ ଥାଆନ୍ତି । ମୋ ସରକାରୀ କାମଟାକୁ ମଧ୍ୟ ସେ ବେଶ୍ ସରଳ କରି ଦେଇଥିଲେ । ତାଙ୍କର ଓ ତାଙ୍କ ଅଫିସ ଷ୍ଟାଫ୍‌ଙ୍କ ସହଯୋଗ ମିଳି ନ ଥିଲେ ମୁଁ ଏତେବଡ଼ ଗୁରୁତ୍ୱପୂର୍ଣ୍ଣ କାମଟାକୁ ମୋଟେ ଏତେ କମ୍ ସମୟ ଭିତରେ ସାରିପାରି ନ ଥାଆନ୍ତି ।

ଦିନ ୧୨ଟା ସୁଦ୍ଧା ଆମ ଅଫିସ୍ କାମ ସରିଗଲା । ମୁଁ ସେଦିନ ଟିକିଏ ସଅଳ ଖିଆପିଆ ସାରି ରେଷ୍ଟ ନେଲି ଏବଂ ଠିକ୍ ତିନଟା ବେଳକୁ ଆମେ ବାହାରି ଗଲୁ ।

ଯାହାଙ୍କ ପାଇଁ ମୋର ତ୍ରିପୁରାର ବେଶ୍ କେତେଟା ବିଶିଷ୍ଟ ସ୍ଥାନ ବୁଲି ଦେଖିବାର ସୁଯୋଗ ପାଇଥିଲି ତାଙ୍କ ବିଷୟରେ ମୁଁ ଏ ଯାଏ ପାଠକଙ୍କୁ କିଛି କହିନି । ସେ ହେଲେ ଶ୍ରୀ ଧ୍ରୁବପଦ ସେନ । ଘର ସେଇ ତ୍ରିପୁରାରେ, ବେଲୋନିଆ ମାଝରେ । ବେଲୋନିଆ ଠିକ୍ ବାଂଲାଦେଶର ନୋଆଖାଲି ଜିଲ୍ଲାକୁ ଲାଗିଛି । ସେ ଯେତେବେଳେ ମୋତେ ନୋଆଖାଲି କଥା କହିଲେ ସେତେବେଳେ ମୋ ଦେହ ଶୀତେଇ ଉଠିଲା । ଏଇଟା ତ ସେଇ ନୋଆଖାଲି ଯୋଉଠି ଦିନେ ହଠାତ୍ ମଣିଷମାନେ ପଶୁ ପାଲଟି ଯାଇଥିଲେ ଏବଂ ମଣିଷ ସମାଜରେ ପାଶବିକ ଅତ୍ୟାଚାରର ନୂତନ ଇତିହାସଟିଏ ଲେଖି ପକାଇଥିଲେ । ସେ ସବୁ ସୁଦୂର ଅତୀତର କଥା । ସେ ଘାଆ ଏବେ ଶୁଖି ଯାଇଥିଲେ ମଧ୍ୟ ତା ତଳର ଯନ୍ତ୍ରଣା ଏବେ ମଧ୍ୟ ସଜୀବ ଅଛି । ସଜୀବ ଅଛି ଖାଲି ଜନଶ୍ରୁତିରେ ନୁହେଁ । ଜୀବନ୍ତ ହୋଇ ରହିଛି ତସଲୀମାଙ୍କ 'ଲଜ୍ଜା'ରେ ଯୋଉଟାକୁ ଏବେ ମଣିଷ ସମାଜରେ ମୌଳିକତାବାଦୀମାନଙ୍କ ପ୍ରତି ଏକ ସତର୍କ ଘଣ୍ଟି ।

ମୁଁ ଧ୍ରୁବପଦ ବାବୁଙ୍କୁ ଦେଖୁଥିଲି । ଦେଖୁଥିଲି ତାଙ୍କ ଦେହରେ ସେ କଳଙ୍କିତ ଇତିହାସର ପୃଷ୍ଠାରୁ ଚେନାଏ କୋଉଠି କେମିତି ଲାଗି ଥାଇପାରେ କିନା । ନା, ସେ କିଛି ଜାଣି ନାହାନ୍ତି । ଖାଲି ଶୁଣିଛନ୍ତି ମାତ୍ର । ସେତିକି ମୋ ପାଇଁ ଯଥେଷ୍ଟ ନୁହେଁ ।

ଧ୍ରୁବପଦ ସେନ ଇତିହାସରେ ଏମ୍. ଏ. ପାଶ୍ କରି ସି. ଆଇ. ଏସ୍. ଏଫ୍.ରେ ସବ୍‌ଇନସ୍‌ପେକ୍ଟର ଚାକିରି କରୁଛନ୍ତି ଏଇ ତିନିବର୍ଷ ହେଲା । ବୟସ ସତେଇଶି ଅଠେଇଶି । ବିବାହ କରି ବସା ବାନ୍ଧିବା କଥା ଚିନ୍ତା କରି ନାହାନ୍ତି । ବୋଧେ ଏକମାତ୍ର ଭଉଣୀ ଯେ କି ଏବେ ସେଇ ଅଗରତାଲାରେ ଏମ୍. ଏ. ପଢୁଛି, ସେ ବିବାହ କଲାପରେ ।

ଆମେ ପ୍ରଥମେ ଗଲୁ ଅଗରତାଲାର ମିଉଜିଅମ୍ । ଛୋଟ ମିଉଜିଅମ୍ । କିନ୍ତୁ ବେଶ୍ କେତୋଟି ଦେଖିବାର ଜିନିଷ ଅଛି । ଏକାଦଶ ଶତାବ୍ଦୀ ବିଷ୍ଣୁ ମୂର୍ତ୍ତି ଓ ସୂର୍ଯ୍ୟମୂର୍ତ୍ତି, ନବମ ଶତାବ୍ଦୀର ବୁଦ୍ଧ ମୂର୍ତ୍ତି ପ୍ରଭୃତି ବେଶ୍ କେତୋଟି ମୂର୍ତ୍ତି ଦେଖିଲା ପରେ ଆମେ ଗଲୁ ରବୀନ୍ଦ୍ରକାନନ । ଏଇ ରବୀନ୍ଦ୍ର କାନନ ଥିଲା ମୋ ପାଇଁ ଏକ ବିଶେଷ ଆକର୍ଷଣର ସ୍ଥାନ ।

କିନ୍ତୁ ଧ୍ରୁବପଦ ମୋତେ ନେଇ ଯେତେବେଳେ ସେଇ ରବୀନ୍ଦ୍ର-କାନନ ପାଖରେ ପହଞ୍ଚେଇ ଦେଲେ ମୁଁ ହତାଶ ହୋଇ ପଡ଼ିଲି । ବିଶ୍ୱକବି ଯେ ଏମିତି ଗୋଟାଏ ପରିତ୍ୟକ୍ତ ପ୍ରାନ୍ତରରେ ନିଜର ଅସ୍ତିତ୍ୱ ଜାହିର କରିବାକୁ ଆପ୍ରାଣ ଚେଷ୍ଟା କରୁଥିବେ ସେତିକି ପୁଣି ଗୋଟାଏ ବଙ୍ଗାଳୀ ଦେଶରେ ଏକଥା ମୁଁ ଚିନ୍ତା

ଜାଣିପାରୁ ନଥିଲି । ରବୀନ୍ଦ୍ର କାନନ ଗୋଟିଏ ଶ୍ରେଷ୍ଠ ପାର୍କ । ଯତ୍ନ ଅଭାବରୁ ପାର୍କଟି ସଂପୂର୍ଣ୍ଣ ଅବହେଳିତ ଅବସ୍ଥାରେ । ବଡ଼ବଡ଼ ଘାସ ବୁଦୁବୁଦିକିଆ ଜଙ୍ଗଲ ଭିତରେ ବିଶ୍ୱକବି ଏବେ ଯଦି ସେ ପ୍ରସ୍ତର ମୂର୍ତ୍ତି ଦେହରୁ ବାହାରକୁ ଆସନ୍ତେ ତେବେ ତାଙ୍କର କବିତାର ଗୋଟିଏ ଧାଡ଼ିଡ଼ି ମନେ ପଡନ୍ତା ନାହିଁ । ଅଧିକନ୍ତୁ ଦିନେ ସେ ଯେ ସେଇ ମାଟିର ବିଶାଳ ରାଜପ୍ରାସାଦରେ ମାସ ମାସ କାଳ ରହି ପୂଜା ପାଉଥିଲେ ଓ କଥାବି ତାଙ୍କର ମନେ ପଡ଼ନ୍ତା ନାହିଁ ।

ସ୍ୱାଧୀନ ଭାରତର ଅର୍ଦ୍ଧ ଶତାବ୍ଦୀର ଇତିହାସରେ କେବଳ ଯେ ରବୀନ୍ଦ୍ରନାଥ ଅବହେଳିତ ତା ନୁହେଁ ମହାତ୍ମାଗାନ୍ଧି, ସୁଭାଷ ବୋଷ, ନେହେରୁ ଓ ସମସ୍ତେ ଯାହି ଯାହି ଡାକ ଛାଡ଼ିଲେଣି । ଭୁଟିଆର ବିଗତ ରାଜନୈତିକ ଘଟଣା ସମୟରେ ବିଖ୍ୟାତ ବ୍ୟଙ୍ଗ ଚିତ୍ରକର ଆର୍. କେ. ଲକ୍ଷ୍ମଣଙ୍କର କାର୍ଟୁନଟିଏ ମନେ ପଡ଼ୁଛି । ସମାଧି ଭିତରୁ ଲେନିନ ଆମେରିକାର ରାଷ୍ଟ୍ରପତିଙ୍କୁ ଫୋନ୍ କରି ପଚାରୁଛନ୍ତି ଆପଣଙ୍କର ସେଠି ମୋ ପାଇଁ ଟିକେ ଜାଗା ହେଇ ପାରିବ କି ? ଓଡ଼ିଶାର ଅବସ୍ଥା ତାଠୁ ଆହୁରି ଖରାପ । ସଚିବାଳୟ ସାମନାରେ ଗୋପବନ୍ଧୁ ହୁଅନ୍ତୁ ବା 'ସମାଜ' ଅଫିସ ସାମନାରେ ଗୋପବନ୍ଧୁ ହୁଅନ୍ତୁ ବର୍ଷସାକ ମୁଣ୍ଡ ଉପରେ ସମସ୍ତଙ୍କ ସାମନାରେ ଚଢ଼େଇ ଚିରଭୁଣୀଙ୍କୁ ସ୍ଥାନ ଦେବାକୁ ବାଧ୍ୟ ।

ବୁକୁଫଟା ଦୀର୍ଘଶ୍ୱାସଟିଏ ପକେଇ ଆମେ ସେଠୁ ଫେରିଲୁ । ଧ୍ରୁବପଦ ମୋତେ ତ୍ରିପୁରାର ରାଜପ୍ରାସାଦ ପାଖକୁ ନେଇଗଲେ । ତା ନାଁ ଉଜ୍ଜୟନ୍ତ ପ୍ରାସାଦ । ଦେଖିଲେ ଆଖି ଖୋସି ହେଇଯିବ । ଆଉ ଗୋଟିଏ ରାଷ୍ଟ୍ରପତି ଭବନ କହିଲେ ଅତ୍ୟୁକ୍ତି ହେବନାହିଁ । ଧ୍ରୁବପଦ ମୋତେ କହିଲେ ୧୯୦୧ରେ ଏଇ ପ୍ରାସାଦଟି ମାତ୍ର ଦଶଲକ୍ଷ ଟଙ୍କା ଖର୍ଚ୍ଚ କରି ତିଆରି କରିଥିଲେ । ସେତେବେଳେ ଥିଲେ ମହାରାଜା ରାଧାକିଶୋର ମାଣିକ୍ୟ ବାହାଦୁର । ତାଙ୍କ ସହିତ ରବୀନ୍ଦ୍ର ନାଥଙ୍କ ସମ୍ପର୍କ ଥିଲା ଅତି ନିବିଡ଼ । ଏ ପ୍ରାସାଦର ଆୟତନ ଏକ ବର୍ଗ କିଲୋ-ମିଟର । ଆଉ ସାମନାରେ ଦେଖନ୍ତୁ ପ୍ରକାଣ୍ଡ ଜଳାଶୟ । ଜଳାଶୟ ତ ନୁହେଁ ଗୋଟାଏ ଶ୍ରେଷ୍ଠ ହ୍ରଦ । ଖରାଦିନେ ସମଗ୍ର ବାୟୁମଣ୍ଡଳଟିକୁ ବଦଳେଇ ଦିଏ । ମୁଁ ଦେଖିଲି ଗ୍ରୀକ୍ ସ୍ଥାପତ୍ୟରେ ତିଆରି ପ୍ରାସାଦର ଶୀର୍ଷ ସ୍ଥାନରେ ବିରାଟ ଗମ୍ବୁଜ । ଜହ୍ନ ରାତିରେ କୁଆଡ଼େ ପ୍ରାସାଦର ପୁରାଛବି ହ୍ରଦରେ ଫୁଟି ଉଠେ ବୋଲି ତାକୁ ଦେଖିବାକୁ ରାତିରେ ଅନେକ ଲୋକ ଆସନ୍ତି । କିନ୍ତୁ ଦୁଃଖର କଥା ପ୍ରାସାଦଟି ଏବେ ସେକ୍ରେଟେରିଏଟ୍‌ରେ ପରିଣତ ହେଇଛି । ଅନ୍ତତଃ ଜନହିତକର କାମରେ ଲାଗୁଛି ।

ଆମେ ଯେଉଁ ଗଲୁଁ ଝିପୁରର ଅନ୍ୟତମ ଟୁରିଷ୍ଟ ଆକର୍ଷଣ ମହାରାଜା ବୀର ବିକ୍ରମ କଲେଜ ।

ମୁଁ ଆଶ୍ଚର୍ଯ୍ୟ ହେଲି । ଗୋଟାଏ କଲେଜ ପୁଣି ଟୁରିଷ୍ଟ ସ୍ପଟ୍ କେମିତି ହେଲା ?

ଧୃପଦ କହିଲେ ସେମିତି ଦର୍ଶନୀୟ ସ୍ଥାନ ହୋଇ ନ ଥିଲେ ରାଜ୍ୟ ସରକାର ତାକୁ ଟୁରିଷ୍ଟମାନଙ୍କ ପାଇଁ ଭ୍ରମଣ ତାଲିକାରେ ରଖି ନ ଥାଆନ୍ତେ ।

ମୁଁ ତାଙ୍କ ମୁହଁକୁ ହାଁ କରି ଅନେଇ ରହିଲି ।

ସେ କହିଲେ ଭାରତର ଆଉ କୌଣସି କଲେଜ ଏପରି ମାନ୍ୟତା ପାଇଛି କି ?

କହୁ କହୁ ଆମେ ଯାଇ ସେ କଲେଜ ସାମନାରେ ପହଞ୍ଚିଲୁଁ । ସତରେ ମୋ ଆଖି ଖୋସି ହୋଇଗଲା । କଲେଜ ସାମନାରେ ମଧ୍ୟ ଗୋଟିଏ ବିରାଟ ଜଳାଶୟ । ଜାଗାଟା ମୋତେ ଖବ୍ ରୋମାଣ୍ଟିକ ମନେହେଲା । ଏ କଲେଜରେ ପଢୁଥିବା ଛାତ୍ର ଛାତ୍ରୀଙ୍କ ମୁଖରୁ ଅବାରିତ କବିତାର ଧାରା ବହୁଥିବ ବୋଲି ମନେ କରିବା ଅନୁଚିତ ହେବ ନାହିଁ । ଧୃପଦ କହିଲେ ଏ କଲେଜର ଲାଇବ୍ରେରୀ ଓ ଲେବୋରେଟରୀ ଦେଖିବାର କଥା । କିନ୍ତୁ ଦୁର୍ଭାଗ୍ୟ ଆଜି ପୂଜା ଉପଲକ୍ଷେ ବନ୍ଦ ଅଛି ।

ତା ପରେ ଆମେ ଆସିଲୁଁ 'ଚଉଦ ଦେବତାର ଘର' ଦେଖିବାକୁ । ଏମିତି ଗୋଟାଏ ନାଁ ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ଚଉଦ ଜଣଙ୍କ ସ୍ଥାନ ଯେ ଗୋଟିଏ ହୋଇପାରେ ଏକଥା ମୁଁ ଚିନ୍ତା କରିପାରୁ ନଥିଲି । ଏପରି ଅନ୍ୟ କୋଉଠି ଦେଖିନାହିଁ । ପୁଣି ଗୋଟିଏ ଲମ୍ବା ସିଂହାସନରେ ଚଉଦଜଣଯାକ ଦେବତାର ଅପୂର୍ବ ସହାବସ୍ଥାନ ସେମାନଙ୍କର ଅମାପ ପାରସ୍ପରିକ ବୁଝାମଣା ଥିବ ବୋଲି ଅନୁମାନ କରିହୁଏ । ମଣିଷ ପାଖରେ ଏସବୁ ଏକାନ୍ତ ବିରଳ ।

ଠିକ ତା ପାଖକୁ ଲାଗି ବ୍ରହ୍ମାଙ୍କ ମନ୍ଦିର । ମୁଁ ଏ ଯାଏ ବ୍ରହ୍ମାଙ୍କ ପାଇଁ ମନ୍ଦିର ଥିବା କଥା ଜାଣି ନ ଥିଲି । ତେବେ ଗୌହାଟିରେ ଗୋଟିଏ ବ୍ରହ୍ମା ମନ୍ଦିର ଥିବା କଥା ଶୁଣି ଥିଲି ।

ଆମେ ଫେରିଲୁଁ । ସେତେବେଳକୁ ପାଞ୍ଚଟା ବାଜିଲାଣି । ସନ୍ଧ୍ୟା ହୋଇ ଆସିଲାଣି । ଝିପୁରା ଭାରତର ପୂର୍ବାଞ୍ଚଳରେ ଥିବାରୁ ସେଠି ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ଅନେକ ଆଗରୁ ହୋଇଯାଏ । ମୋତେ ବି ଠିକ୍ ଏ ଥକ ପଡ଼ିଥିଲା ପରି ଲାଗୁଥାଏ । କିନ୍ତୁ ଦେଖିବାର ଶୋଷ ମଧ୍ୟ କମୁ ନଥାଏ ।

ମୁଁ କହିଲି ସରିଲା ନା ଆଉ ଅଛି ?

ଧ୍ରୁପଦ କହିଲେ, ଆଉ ସେମିତି ବିଶେଷ କିଛି ନାହିଁ । ତେଣୁ ଚାଲନ୍ତୁ ମେନ୍ ମାର୍କେଟ ଦେଇ ଫେରିଯିବା ।

ଆମେ ଫେରୁଥିବା ବେଳେ ଗୋଟାଏ ବିରାଟ ଛକ ଜାଗାରେ ଧ୍ରୁପଦ ଗାଡ଼ି ଅଟକେଇଲେ ।

କଅଣ ହେଲା ? ମୁଁ ପଚାରିଲି ।

"ଟିକିଏ ଉହ୍ଲାନ୍ତୁ" କହି ମୋତେ ସେ ବାହାରକୁ ଆସିବାକୁ କହିଲେ ।

ମୁଁ ଦେଖିଲି ବିରାଟ ଛକର ମଝିରେ ଗୋଟାଏ ଲୁହା ରେଲିଂର ଗୋଲ ଚକ୍‌କର ଟିଏ । ତା ଭିତରେ ବିରାଟ କମାଣଟିଏ ଆମ ଆଡ଼କୁ ମୁହଁ ମେଲାଇ ପଡ଼ିଛି । କୋଉ ଶତାବ୍ଦୀ ତଳର କେଜାଣି ।

ଧ୍ରୁପଦ ତାର ଇତିହାସ ଆରମ୍ଭ କଲେ । କହିଲେ ୧୬୭୪ ମସିହାର କଥା । ସେତେବେଳେ ତ୍ରିପୁରାର ରାଜା ଥିଲେ ମହାରାଜ ଧାନ୍ୟ ମାଣିକ୍ୟ । ଜଣେ ବଡ଼ ବୀର ଥିଲେ । ସେ ଯୁଦ୍ଧ କରିଥିଲେ ଗୌଡ଼େଶ୍ୱର ହୁସେନ୍ ସିଂହଙ୍କର ଏକ ଦୁର୍ଦ୍ଧର୍ଷ ବାହିନୀ ସହିତ । ସେମାନଙ୍କୁ ପରାସ୍ତ କରି ସେ ଏହି କମାଣଟିକୁ ଜବତ କରିଥିଲେ । ସେଇ ଦିନଠୁ ସେ ବିଜୟର ସ୍ମାରକୀ ସ୍ୱରୂପ ଏବଂ ଅତୀତ ଐତିହ୍ୟର ଗୌରବକୁ ସ୍ମୃତି ପଟରେ ଧରି ରଖିବାକୁ ଏଇଟିକୁ ଏଇଠି ରଖାଯାଇଛି ।

ଏଥର ଚାଲ ଫେରିବା । ମୁଁ କହିଲି ଥକି ପଡ଼ିଥିବା ସ୍ୱରରେ ।

ସେ କହିଲେ ଆପଣଙ୍କ ଯେମିତି ଇଚ୍ଛା । ତେବେ ପାଖରେ ଆଉ ଗୋଟାଏ ସ୍ଥାନ ରହିଯିବ କାହିଁକି ? ଆପଣ ମଧ୍ୟ ଛାଡ଼ିବାକୁ ଚାହିଁବେନି ।

ଆଉ କଅଣ ରହିଗଲା ? ମୁଁ ପଚାରିଲି ।

"ଗୋଟାଏ ଜଗନ୍ନାଥ ମନ୍ଦିର ।"

ଜଗନ୍ନାଥ ମନ୍ଦିର ? ଏଠିବି ଅଛି ?

ସେ କହିଲେ ଆପଣ ଅନ୍ତତଃ ସେଇଟିକୁ ଦେଖନ୍ତୁ ।

ଆମ ଗାଡ଼ି ପୁଣି ବୁଲିଲା । ପୁଣି ଜଗନ୍ନାଥ ମନ୍ଦିରକୁ । ସେତେବେଳକୁ ୬୮ଟା ଆରତିର ସମୟ । ମନ୍ଦିରଟିରେ ବେଶ୍ ଭିଡ଼ ଜମି ଆସିଥାଏ । ଆମେ ଯାଇ ପହଞ୍ଚିଲା ବେଳକୁ ପୂଜା ଆରମ୍ଭ ହେଉଥାଏ । ସୁନ୍ଦର ମାର୍ବଲ ପଥରର ଚଟାଣ

ଉପରେ ଟିକଏ ବସି ପଡ଼ିଲି ମନ୍ଦିରଟା ସେମିତ କିଛି ଖୁବ୍ ବେଶୀ ଆକର୍ଷଣୀୟ ବୋଲି ମୋର ମନେ ହେଲାନାହିଁ । ମନ୍ଦିରଟା ବେଶୀ ପୁରୁଣା ମଧ୍ୟ ନୁହେଁ । ଧୃପଦ କହିଲେ ବୋଧେ ପଚିଶ ପାଠିଏ ବର୍ଷ ତଳେ ତିଆରି ହୋଇଥିଲା ସେଇ ମହାରାଜାଙ୍କ ସମୟରେ ।

ତ୍ରିପୁରାରେ ମୁଁ ବସ୍ତୁତଃ ଦୁଇଟି ଜଗନ୍ନାଥ ମନ୍ଦିର ଦେଖିଲି । ଗୋଟିଏ ଭାଙ୍ଗି ଭୁଜି ଗଲାଣି । ବିଗ୍ରହ ବସ୍ତୁହରା ହୋଇ କୁମିଲ୍ଲା ସହରରେ । ଆଉଜଣେ ସଃଶ୍ୱରେ ବିଦ୍ୟମାନ । ତେବେ କଏ କହୁଚି ତ୍ରିପୁରୀମାନେ ବଙ୍ଗାଳୀ ସେମାନେ ଓଡ଼ିଆ ସହିତ ଏକାତ୍ମ ନୁହନ୍ତି । ମୋର ମନେହୁଏ ଆମ ଅଜାଣତରେ ଜଗନ୍ନାଥଙ୍କ ମାଧ୍ୟମରେ ସେମାନେ ଆମ ଭିତରେ ଗୋଟାଏ ବିରାଟ ସ୍ଥାନ ମାଡ଼ି ବସିଚନ୍ତି । ଏବର ପରିବର୍ତ୍ତିତ ପୃଥିବୀରେ ତାକୁ ଚିହ୍ନିବାକୁ ଆଉ ଗୋଟିଏ ହୃଦୟ ଲୋଡ଼ା ।

—o—

# ଶେଷ ଅସରର ସଂଧ୍ୟା

ସେଇଟା ଥିଲା ମୋ'ର ଶେଷ କାର୍ଯ୍ୟକ୍ରମ ତ୍ରିପୁରାର ରାଜଧାନୀ ଅଗରତାଲାରେ ।

ମୁଁ ଜାଣି ନଥିଲି ଯେ ସନ୍ଧ୍ୟାଟା ଏମିତି ଜମିବ ବୋଲି । ପ୍ରକୃତରେ ଶ୍ରୀ. ଜୋଶୀ ମୋ ପାଇଁ କେବଳ ନୈଶ୍ୟ ଭୋଜିର ଆୟୋଜନ ସହିତ ତ୍ରିପୁରାର କେତେଜଣ ସାହିତ୍ୟ ଓ ସଂସ୍କୃତି ପ୍ରେମୀଙ୍କ ସହିତ ଗୋଟିଏ ବନ୍ଧୁ ମିଳନର ଆୟୋଜନ କରିବେ ବୋଲି ମୋର ଧାରଣା ନଥିଲା । ଆଠ ଦଶଜଣଙ୍କ ସ୍ଥାନରେ ଥିଲେ ପ୍ରାୟ କୋଡ଼ିଏ ଜଣ । ସେମାନଙ୍କ ଭିତରୁ ଅନ୍ୟ କେତେଜଣ ONGC ବାହାରୁ ମଧ୍ୟ ଥିଲେ ।

ଶ୍ରୀ ଜୋଶୀ ମୋର ପରିଚୟ କରାଇ ଦେଲେ । ସେ କହିଲେ ଶ୍ରୀ ମହାପାତ୍ର ଅନେକ ଗୁଡ଼ିଏ ଲେଖା ଉତ୍ତର ପୂର୍ବାଞ୍ଚଳୀୟ ରାଜ୍ୟ ସମୂହ ଉପରେ ଲେଖି ଥିବାରୁ ତ୍ରିପୁରା ବିଷୟରେ ମଧ୍ୟ ତାଙ୍କର ଆଗ୍ରହ ସୃଷ୍ଟି ହୋଇଛି ।

ସେ ମୋତେ ଅନ୍ୟମାନଙ୍କ ସହିତ ପରିଚୟ କରେଇ ଦେଲେ । ସେମାନଙ୍କ ଭିତରେ ଥିଲେ ମୃଣ୍ମୟ ଚକ୍ରବର୍ତ୍ତୀ ନାଟ୍ୟକାର ତଥା ଇଂଜିନିଅର । ଅମ୍ଳାନ ଦାସ, ମଞ୍ଚ ଶିଳ୍ପୀ ତଥା ONGCର ଅଫିସ ଷ୍ଟାଫ୍, ଅର୍ଦ୍ଧେନ୍ଦୁ ଶେଖର ଦାସ, ତ୍ରିପୁରା ସରକାରଙ୍କର ଲୋକ ସଂପର୍କ ଅଫିସର ତଥା ଲେଖକ ପ୍ରଧାନ । ମୁଁ ଏପରି ବନ୍ଧୁମାନଙ୍କୁ ପାଖରେ ପାଇବ ବୋଲି ଆଶା କରି ନଥିଲି ।

ତ୍ରିପୁରା ଏପରି ଏକ ରାଜ୍ୟ ଯୋଉଠ ବାଂଲାଦେଶରୁ ଆସିଥିବା ଅର୍ଦ୍ଧାଧିକ ବଂଗାଳୀ । ବାଙ୍ଗଳିକ ବହୁ ଭାଷା ଓ ସଂସ୍କୃତିର ପାହାଡ଼ିଆ ଉପଜ ତ । ତେଣୁ ମୁଁ ମୋଟାମୋଟି ସେମାନଙ୍କ ସାଂସ୍କୃତିକ ଜନ ଜୀବନ ଏବଂ ବିଶେଷ କରି ସ୍ୱାଧୀନତା ପରେ ବାହାରୁ ଆସିଥିବା ବଂଗାଳୀମାନଙ୍କ ସହିତ ସେମାନଙ୍କର କି ପ୍ରକାର ସାମାଜିକ ମିଳନ ହେଲା କି ନା ସେ ବିଷୟରେ ଜାଣିବାକୁ ଚାହୁଁଥିଲି । ତାର କାରଣ ହେଲା ଉତ୍ତର ପୂର୍ବାଞ୍ଚଳୀୟ ରାଜ୍ୟମାନଙ୍କରେ କେତେକ ସ୍ଥାନରେ ଯେ ପ୍ରକାର କିଛି ବ୍ୟତିକ୍ରମ ମୁଁ ଲକ୍ଷ୍ୟ କରିଛି ଯାହା ଫଳରେ ପରବର୍ତ୍ତୀ କାଳରେ ଅନ୍ତର୍ଦ୍ୱନ୍ଦ୍ୱ ଆରମ୍ଭ ହୋଇଛି ।

ମୃଣ୍ମୟ ବାବୁ ଏଥିରେ ଉତ୍ସାହିତ ହେଲେ । ସେ ପ୍ରଥମେ ଆରମ୍ଭ କଲେ—କହିଲେ, ତ୍ରିପୁରାର ଇତିହାସ ଅତି ପ୍ରାଚୀନ । ତା ନାଁରୁ ହିଁ ତାର ପ୍ରାଚୀନତା ଜଣାପଡ଼େ । 'ତୁଇ' ଓ 'ପ୍ରା' ଏହି ଦୁଇଟି ଉପଜାତୀୟ ଶବ୍ଦରୁ ତ୍ରିପୁରାର ସୃଷ୍ଟି । 'ତୁଇ' ଅର୍ଥ ପାଣି ଓ 'ପ୍ରା' ଅର୍ଥ ପାଖରେ । ଏବେବି କେତେକ ପାହାଡ଼ିଆ ଜାତି ତ୍ରିପୁରା ନକହି 'ତୁଇପାରା' ବୋଲି କହି ଥାଆନ୍ତି ।

ସେ କହିଲେ ପାହାଡ଼ିଆ ଉପଜାତିମାନଙ୍କର ପ୍ରତ୍ୟେକଙ୍କର ନିଜସ୍ୱ ଭାଷା ଓ ସ୍ୱତନ୍ତ୍ର ସାଂସ୍କୃତିକ ପରିଚୟ ଅଛି । ଏ ଛୋଟିଆ ରାଜ୍ୟ ବିଭିନ୍ନ ସମୟରେ ବିଭିନ୍ନ ରାଜନୈତିକ ବାତାବରଣ ଭିତର ଦେଇ ଗତି କରିଥିବାରୁ ତାର ସ୍ୱତନ୍ତ୍ର 'ଘରନା' ବୋଲି କିଛି ନାହିଁ । କିନ୍ତୁ ସଚୀନ ଦେବ ବର୍ମନଙ୍କ ବେଳେ ଏହା ପ୍ରଦେଶ ବାହାରେ କିଛିଟା ସ୍ୱତନ୍ତ୍ର୍ୟ ଅର୍ଜନ କଲା ।

ମୁଁ ପଚାରିଲି ସଚୀନ ଦେବଙ୍କ ଅସମ୍ଭବ ଲୋକପ୍ରିୟତା ଉପଜାତିଙ୍କର ସାଂସ୍କୃତିକ ସଚେତନତାକୁ କ୍ଷୁଣ୍ଣ କଲାକି ?

ସେ କହିଲେ ନା । ଯେପରି କାଳେ ହେବ ବୋଲି ଏଠାର କମ୍ୟୁନିଷ୍ଟ ସରକାର ସେ ସବୁ ଉପଜାତିଙ୍କର ନୃତ୍ୟ ଓ ସଂଗୀତର ସୁରକ୍ଷା ପାଇଁ ଏକ ଅଭିନବ ପନ୍ଥା ଅବଲମ୍ବନ କଲେ । ତା ସତ୍ତ୍ୱେ ତ୍ରିପୁରାର **'ବଂଶୀ ସଂଗୀତ',** ବାଉଁଶ ନୃତ୍ୟ ବା **Bamboo Dance** ଗଆଙ୍ଗ ଡ଼ାନ୍ସ, ଗରିଆ ଡାନ୍ସ, ଲେବ୍ରାଂ ବୋମାନି ଡାନ୍ସ, ଗଜନ ଡାନ୍ସ ଏବଂ 'ବସନ୍ତ ଡାନ୍ସ' ମାନଙ୍କରେ ଉଭୟ ବଂଗାଳୀ ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ଅନେକ ମିଶ୍ରଣ ଘଟିଛି ।

ଏଇସବୁ କାରଣରୁ ସରକାର ଲୋକ ସଂଗୀତ ଓ ଲୋକନୃତ୍ୟ ଗୁଡ଼ିକର ପୁନରୁଦ୍ଧାର ତଥା ତାର ସୁରକ୍ଷା ପାଇଁ ପ୍ରଚୁର ପରିମାଣରେ ସାହାଯ୍ୟ ଯୋଗାଇ ଦେଲେ । ଲୋକ ସଂଗୀତ ଭିତରେ ନାଉରିଆ ସଗୀତ । କୃଷକ ବା ଲୁଗା ବୁଣିବା ବେଳର ସଗୀତ କିମ୍ବା ଏପରିକି ଭିକାରୀଟିଏ ଭିକ ମାଗୁଥିବା ବେଳର ଲୋକଗୀତଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ । ଏସବୁର ସୁରକ୍ଷା ପାଇଁ ସରକାର 'ଲୋକ-ରଂଜନ ଶାଖା'ମାନ ଗ୍ରାମମାନଙ୍କରେ ଗଢ଼ିଛନ୍ତି । ଦେଶର ପ୍ରାୟ ପ୍ରତ୍ୟେକ 'ଫୋକ୍ ଆର୍ଟିଷ୍ଟ' ଏହି ଶାଖାମାନଙ୍କର ସଭ୍ୟ । ସେ କହିଲେ ଏଯାଏ ମୋଟ ୩୪୫ ଶାଖା ଗଢ଼ା ଯାଇଛି ଏବଂ ଏଥିରେ ଏବେ ୧୬,୦୦୦ ସଦସ୍ୟ ଅଛନ୍ତି । ଅଧିକ ଶାଖା ମଧ୍ୟ ଗଢ଼ା ଯାଉଛି । ବର୍ଷକ ଭିତରେ ଏବେ ପ୍ରାୟ ୧୬୦୦ ପ୍ରକାର ସଂଗୀତ ଓ ନୃତ୍ୟ ଉତ୍ସବ ଅନୁଷ୍ଠିତ ହୁଏ ଏବଂ ଏଥିରେ ୭୪ ହଜାର ଶିଳ୍ପୀ ଭାଗ ନିଅନ୍ତି ।

ଏତକବେଳେ ଲୋକ ସଂପର୍କ ଅଫିସର କହିଲେ ସରକାରଙ୍କ ତରଫରୁ ଗୋଟିଏ Cultural Calender ଏବେ ଚାଲୁ କରାଯାଇଛି । ଏଥିରେ ସବୁ ପ୍ରକାର ଉତ୍ସବାନୁଷ୍ଠାନ, ପର୍ବପର୍ବାଣିମାନ ଏବଂ ସବୁ ଜାତି ଉପଜାତିଙ୍କର ଉତ୍ସବମାନ ସ୍ଥାନ ପାଇଛି । ଏହିସବୁ ଶାଖା ଓ ସଗଠନମାନ ସରକାରଙ୍କଠାରୁ ନିୟମିତ ସାହାଯ୍ୟ ପାଆନ୍ତି ।

ଗୋଟିଏ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି ସେ ଯେତେବେଳେ କହିଲେ ଗାଁ ମାନଙ୍କରେ ଯାତ୍ରା ଥିଏଟରକୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ପ୍ରତି ସବ୍‌ଡ଼ିଭିଜନରେ ଗୋଟିଏ ଗୋଟିଏ 'ଡ୍ରେସ୍ ବେଙ୍କ' ସ୍ଥାପିତ ହୋଇଛି । ନାଟ୍ୟାନୁଷ୍ଠାନମାନେ ଏହି ବେଙ୍କରୁ ସାମାନ୍ୟ ମାତ୍ର ଭଡ଼ା ଦେଇ ଡ୍ରେସ୍ ନେଇ ପାରିବେ ।

ଯାତ୍ରା ଓ ଥିଏଟରକୁ ଉତ୍ସାହିତ କରିବାକୁ ବର୍ଷକ ଭିତରେ ଅନେକଗୁଡ଼ିଏ ପ୍ରତିଯୋଗିତାର ଆୟୋଜନ କରାଯାଏ । ଫଳରେ ଆଦିବାସୀଙ୍କର ନିଜ ଭାଷାରେ ମଧ୍ୟ ଯାତ୍ରା ଥିଏଟର ଅନୁଷ୍ଠିତ ହୁଏ । ସେ କହିଲେ ଗୋଟିଏ ଗୋଟିଏ ବାର୍ଷିକ ପ୍ରତିଯୋଗିତାରେ ୭୩ଟି ଦଳ ଭାଗ ନିଅନ୍ତି ।

ମୁଁ କହିଲି ଆପଣଙ୍କ ସାହିତ୍ୟ କ୍ଷେତ୍ରରେ ଏହିପରି କିଛି ହୋଇଛି କି ଯାହା ସ୍ଥାନୀୟ ଉପଜାତି ମାନଙ୍କୁ ଉତ୍ସାହିତ କରିଛି ।

ସେ କହିଲେ ରବୀନ୍ଦ୍ରନାଥ, ନଜରୁଲ ଇସଲାମ୍ ଏବଂ ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କର ଅନେକ କାବ୍ୟ କବିତାକୁ 'କାକ୍ ବାରକ୍' ପ୍ରଭୃତି ଆଦିବାସୀ ଭାଷାରେ ଅନୁବାଦ କରି ବହି ଆକାରରେ ସେମାନଙ୍କ ଭିତରେ ବିତରଣ କରାଯାଇଛି । ରବୀନ୍ଦ୍ର ସଂଗୀତ ଓ ଗୀତିନାଟ୍ୟଗୁଡ଼ିକୁ ମଧ୍ୟ କାକ ବାରକ ଭାଷାରେ ଅନୁବାଦ କରି ସେମାନଙ୍କୁ ଶିକ୍ଷା ଦିଆଯାଉଛି । ଏହାଦ୍ୱାରା ଆମର ସାଂସ୍କୃତିକ କ୍ଷେତ୍ରରେ ଏକ ନୂତନ ଜାଗରଣ ଦେଖା ଦେଇଛି ।

ସେ ଆହୁରି କହିଲେ ଯେ ଏବେ ଆମ ସମାଜରେ ଧସେଇ ପଶି ଆସୁଥିବା ଅପସଂସ୍କୃତି ପପ୍ ଗୀତ ଗୁଡ଼ିକରୁ ଆମ ସଂସ୍କୃତିକୁ ମୁକ୍ତ କରିବା ପାଇଁ ସରକାର 'ଶରତ୍-ଉତ୍ସବ' ନାମକ ଏକ ନୂଆ ଉତ୍ସବ ଆରମ୍ଭ କରିଛନ୍ତି । ଦୁର୍ଗାପୂଜା ପରେ ପରେ ପ୍ରାୟ ପ୍ରତି ସହରରେ ଏହା ଅନୁଷ୍ଠିତ ହୁଏ । ତାର ପ୍ରଭାବ ଏତେ ସୁଦୂର ପ୍ରସାରୀ ହେଲା ଯେ ଏହା ଫଳରେ ଆମ ସମାଜରୁ ସେ ସବୁ ସଂଗୀତ (ପାଶ୍ଚାତ୍ୟ ସଂଗୀତ) ଆସ୍ତେ ଆସ୍ତେ ଲୋକ ପ୍ରିୟତା ହରେଇ ବସୁଛି ।

ଏସବୁ କଥା ପରେ ମୋର ଆଉ କିଛି କହିବାର ନଥିଲା । ଗୋଟାଏ ଜାତିର ସଂଗୀତ ନାଟକ ଓ ତାର ପାରମ୍ପରିକ ଲୋକ ନୃତ୍ୟଗୁଡ଼ିକୁ ସୁଦୃଢ଼ କରିବା

ଉଦ୍ଦେଶ୍ୟରେ ଗୋଟାଏ ଦେଶର ସରକାର ଯେ ଏତେ ପରିମାଣରେ ସାହାଯ୍ୟ କରିପାରେ ଏକଥା ଶୁଣିଲା ବେଳେ ମୋ ଚକ୍ଷୁ ବିସ୍ମୟ ବିସ୍ଫାରିତ ହୋଇ ଯାଉଥିଲା । ହିନ୍ଦୁସ୍ତାନୀମାନଙ୍କ ବଙ୍ଗାଳୀମାନଙ୍କ ଭିତରେ ଏବଂ ବଙ୍ଗାଳୀମାନଙ୍କ ହିନ୍ଦୁସ୍ତାନୀମାନଙ୍କ ଭିତରେ ମିଶେଇ ଯୋଉ ନୂତନ ସାଂସ୍କୃତିକ ସଂପର୍କର ସେତୁ ସେଠି ତିଆରି ହେଲାଣି ତାହା ମୋର ମନେହୁଏ ଆମ ପାଇଁ ଗୋଟିଏ ନୂତନ ଦିଗନ୍ତ ଉନ୍ମୋଚିତ କରନ୍ତା । କିନ୍ତୁ ହାୟ, ସେ ସ୍ୱପ୍ନ ତଥାପି ବୋଧେ ଅନେକ ଦୂରରେ ।

ଓଡ଼ିଶାରେ ଆଦିବାସୀ ସାହିତ୍ୟର ଗବେଷଣା, ସେମାନଙ୍କ ସଂସ୍କୃତିର ପୁନରୁଦ୍ଧାର ନାଁରେ ଆମେ ହୁଏତ କୋଟି କୋଟି ଖର୍ଚ୍ଚ କରୁଛୁଁ । କିନ୍ତୁ ତାଙ୍କ ସାହିତ୍ୟକୁ ଆଣି ଓଡ଼ିଆରେ ମିଶେଇବା ବା ଆମ ସାହିତ୍ୟକୁ ତାଙ୍କ ପାଖରେ ପହଞ୍ଚେଇବା କାମ ଏ ଯାଏ ହୋଇନାହିଁ କି ହେବ ନାହିଁ ମଧ୍ୟ । ହିନ୍ଦୁସ୍ତାନୀ ପରି ଦୁଇ ସଂସ୍କୃତିକୁ ମିଶେଇ ତାର ନୂଆ ରୂପଟିଏ ତିଆରି କରିବା କଥା ଆମେ ଏ ଯାଏ ଚିନ୍ତା କରିନୁ ।

